**ଜଣେ ଜେପି : ଅନେକ ଜୀବନ** (ଜୀବନୀ)

ଲେଖକ : ଡକ୍ଟର ରବିନାରାୟଣ ମହାରଣା
ପ୍ରକାଶକ : ପକ୍ଷୀଘର ପ୍ରକାଶନୀ
୩୨, ମଧୁସୂଦନ ନଗର, ଭୁବନେଶ୍ୱର-୦୧
ପ୍ରଚ୍ଛଦ ତୈଳ ଚିତ୍ର : ପ୍ରଭୁ ଯୋଷୀ

ପ୍ରଥମ ସଂସ୍କରଣ : ୨୦୨୧

---

**JANE JEPI : ANEKA JIBANA** (Biography)

Author : Dr. Rabinarayan Moharana
Ph. : 7978977533

Publisher : **Pakshighar Prakashanee**
32, Madhusudan Nagar
Bhubaneswar-01, Odisha, India.
Ph. +91 94385 59778
e-mail : pakshighara1@gmail.com

Cover Design : Sushil Pohan
Oil Painting for Cover : Prabhu Joshi
Printed at : Aaditri Printers & Publishers pvt. Ltd.

First Edition : 2021

Price : ₹170.00

# ଭୂ ମି କା

ଜଗନ୍ନାଥ ପ୍ରସାଦ ଆନୁଷ୍ଠାନିକ ଶିକ୍ଷା ପରେ ନିଜର ବୃତ୍ତି ଭାବରେ ଭାରତୀୟ ପ୍ରଶାସନିକ ସେବାକୁ ଆପଣେଇ ନେଇଥିଲେ ମଧ୍ୟ ସମୟକ୍ରମେ ସାହିତ୍ୟ ପ୍ରତି ଏତେ ଯତ୍ନଶୀଳ ହୋଇ ଉଠିଲେ ଯେ ସେଥିପାଇଁ ଚାକିରିକୁ ମଧ୍ୟ ପରିତ୍ୟାଗ କରିବାକୁ ପଛେଇଲେ ନାହିଁ। ବାସ୍ତବରେ ସାହିତ୍ୟ ସେବାପାଇଁ ଚାକିରିକୁ ପରିତ୍ୟାଗ କରିଥିବା ବ୍ୟକ୍ତି ଅତ୍ୟନ୍ତ ପକ୍ଷେ ଆମ ସମାଜରେ ବିରଳ। ତାଙ୍କ ଜୀବନ ଓ ସାହିତ୍ୟ ଅଙ୍ଗାଙ୍ଗୀ ଭାବେ ଜଡ଼ିତ କହିଲେ ଆଦୌ ଅତ୍ୟୁକ୍ତି ହେବ ନାହିଁ। ଅନ୍ୟପକ୍ଷରେ କହିବାକୁ ଗଲେ ଜଗନ୍ନାଥ ପ୍ରସାଦ ଆଜି ଜଣେ କେବଳ ଖ୍ୟାତନାମା ସାରସ୍ୱତ ପୁରୁଷ ନୁହନ୍ତି; ବରଂ ଓଡ଼ିଆ ସାରସ୍ୱତ ପରିମଣ୍ଡଳ ପାଇଁ ସେ ଏକ ଅନୁଷ୍ଠାନ।

ସବୁଠାରୁ ବଡ଼ କଥା ହେଉଛି ଯେ ସାହିତ୍ୟର ସବୁ ବିଭାଗରେ ଜେପି ନିଜର ଲେଖନୀ ଚାଳନା କରିଥିଲେ ମଧ୍ୟ ଆତ୍ମଜୀବନୀ ଲେଖିବା ଦିଗରେ ସେ ନିଜର ବିମୁଖତା ପ୍ରଦର୍ଶନ କରିଛନ୍ତି। ତାହାହିଁ ତାଙ୍କ ଜୀବନୀ ପାଠ କରିବା ଦିଗରେ ପାଠକମାନଙ୍କର ପାଠକୀୟ ଉଦବେଗକୁ ବହୁଗୁଣିତ କରିଥାଏ। ତେଣୁ ଜଣେ ଶ୍ରଦ୍ଧେୟ ପାଠକ ଭାବରେ ଏହି ଲେଖକ ଜେପିଙ୍କ ଜୀବନୀ ଲେଖିବାକୁ ବ୍ୟଗ୍ର ହୋଇଛି ଓ ତାହାକୁ ଏକ ସାରସ୍ୱତ ତଥା ଜାତୀୟ କର୍ତ୍ତବ୍ୟ ବୋଲି ମଧ୍ୟ ମନେ କରିଛି।

ଜେପିଙ୍କ ଜୀବନୀ ଲେଖିବା ବେଳେ ଏହି ଲେଖକ ଅନୁଭବ କରିଛି ଯେ ଜେପି ବ୍ୟକ୍ତି ଭାବରେ ଜଣେ ହେଲେ ମଧ୍ୟ ତାଙ୍କ ସାରସ୍ୱତ ବ୍ୟକ୍ତିତ୍ୱ ବହୁମୁଖୀ, ଅନେକ ଜୀବନ ସେ ଭୋଗୁଛନ୍ତି। ସେହି କାରଣରୁ ଗ୍ରନ୍ଥର ନାମ ରଖା ଯାଇଛି 'ଜଣେ ଜେପି : ଅନେକ ଜୀବନ'।

ପରିଶେଷରେ ଏହି ଗ୍ରଂଥର ପ୍ରକାଶନପାଇଁ ଓଡ଼ିଶାର ସ୍ୱନାମଧନ୍ୟ ପ୍ରକାଶକ ଶ୍ରୀ ବନୋଜ ତ୍ରିପାଠୀ ମହାଶୟ ତାଙ୍କର ପକ୍ଷୀଘର ସଂସ୍ଥା ତରଫରୁ ସହଯୋଗର ହାତ ବଢ଼ାଇ ଥିବାରୁ ଲେଖକ ତାଙ୍କ ନିକଟରେ ହୃଦୟର ଗଭୀର କୃତଜ୍ଞତା ଜ୍ଞାପନ କରୁଛି। ଗ୍ରନ୍ଥଟି ସର୍ବାନ୍ତଃକରଣରେ ପାଠକୀୟ ଆଦୃତି ଲାଭ କରିବ ବୋଲି ମୋର ଆଶା ଓ ବିଶ୍ୱାସ।

**ରବିନାରାୟଣ ମହାରଣା**

# ସୂଚୀପତ୍ର

# ପରିଶିଷ୍ଟ

# ଶୈଶବର ଚପଳତା: ସୃଜନକର୍ମର ଉଦୟରାଗ

ଜଗନ୍ନାଥ ପ୍ରସାଦ ଦାସ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଜଣେ ପ୍ରବୀଣ ସାହିତ୍ୟିକ। ଯଦିଓ ସେ କବି ଭାବରେ ସର୍ବାନ୍ତଃକରଣରେ ଖ୍ୟାତ, ତେବେ ତାଙ୍କର ସଂବିତ୍ କବିତା ଛଡ଼ା ଗଳ୍ପ, ଉପନ୍ୟାସ, ନାଟକ, ସମାଲୋଚନା, ଗବେଷଣାତ୍ମକ ନିବନ୍ଧ ଓ ବିଶେଷ କରି ଚିତ୍ରକଳା କ୍ଷେତ୍ରରେ ବେଶ୍ ଅନାୟାସ ଲବ୍ଧ। ତାଙ୍କର ଜନ୍ମ ପୁରୀ ଜିଲ୍ଲା ଅନ୍ତର୍ଗତ ବାଣପୁର ଗ୍ରାମରେ, ୧୯୩୬ ମସିହା ଅପ୍ରେଲ ମାସ ୨୬ ତାରିଖରେ। ଜନ୍ମ ସମୟ ସଂକ୍ରାନ୍ତରେ ତାଙ୍କ ଜାତକରେ ଯାହା ଲିପିବଦ୍ଧ ରହିଛି ତାହା ଏହିପରି: "ଶ୍ରୀ ବୀରଶ୍ରୀ ରାମଚନ୍ଦ୍ର ଦେବଙ୍କ ୧୨ ଅଙ୍କ ଶକାବ୍ଦ ୧୮୫୮ ସନ ୧୩୪୩ ବୈଶାଖ ଶୁକ୍ଳ ଷଷ୍ଠୀ ରବିବାର ଦିବା ଦ ୧୯ । ୩୦ ଲିତା ମେଷ ୧୪ ଦିନ।" ତାଙ୍କ ପିତା ଥିଲେ ଅଧ୍ୟାପକ ଶ୍ରୀ ଶ୍ରୀଧର ଦାସ ଓ ମା ଥିଲେ ଶ୍ରୀମତୀ ଇନ୍ଦୁ ଦେବୀ। ତାଙ୍କ ପିତାଙ୍କର ପୈତୃକ ଗୃହ କିନ୍ତୁ ବାଣପୁର ନଥିଲା, ଥିଲା ନଇଗୁଆଁ, କାକଟପୁରରେ। ସମୟକ୍ରମେ ସେ ଯେତେବେଳେ ବୌଦରୁ ଏଜୁକେଶନ ଅଫିସରର ପଦ ଛାଡ଼ି ବାଣପୁର ହାଇସ୍କୁଲରେ ଯୋଗ ଦେଇଥିଲେ, ସେତିକି ବେଳେ ସେ ହାତୀମୁଣ୍ଡା ପୋଖରୀ ନିକଟସ୍ଥ ଟାଙ୍ଗରା ଭୂଇଁରୁ କିଛି ଜାଗା କିଣି ଘର କରି ରହିଥିଲେ, ଯାହାକି ସ୍କୁଲର ଅତ୍ୟନ୍ତ ନିକଟବର୍ତ୍ତୀ ଥିଲା। ସେତେବେଳେ ସେ ସ୍ଥାନରେ ତାହା ଗୋଟିଏ ମାତ୍ର ବାସଗୃହ ଥିଲା। ଅବଶ୍ୟ ପରବର୍ତ୍ତୀ ସମୟରେ ପଣ୍ଡିତ ବିନାୟକ ମିଶ୍ର ସେଠାରେ ଜାଗା କିଣି ଘର ତିଆରି କରିବାରୁ ସେ ଶ୍ରୀଧର ଦାସଙ୍କ ପଡ଼ୋଶୀ ହୋଇଗଲେ। ଜଗନ୍ନାଥ ପ୍ରସାଦଙ୍କର ଜନ୍ମ ଓ ପ୍ରାଥମିକ ଶିକ୍ଷାର ମୂଳଦୁଆ ଏହି ବାଣପୁରରେ ହିଁ ସଂପନ୍ନ ହୋଇଛି।

ଜଗନ୍ନାଥ ପ୍ରସାଦଙ୍କ ଜନ୍ମ ସଂପର୍କରେ ପିତା ଶ୍ରୀଧର ଦାସ ତାଙ୍କ ଆତ୍ମଜୀବନୀ 'ସୁଅମୁହଁର ପତର'ରେ ଉଲ୍ଲେଖ କରି କୁହନ୍ତି ଯେ, "....... ଜଗନ୍ନାଥଙ୍କ ପ୍ରସାଦରୁ ପାଇଥିବାରୁ ତାହାର ନାମ ଦେଇଥିଲି ଜଗନ୍ନାଥ ପ୍ରସାଦ।" ମାତ୍ର ବାଲ୍ୟକାଳରୁ ଜଗନ୍ନାଥ ପ୍ରସାଦଙ୍କର ମାନସିକତା ଥିଲା ଈଶ୍ୱର ବିଶ୍ୱାସର ବିପରୀତ ଦିଗରେ। ଅନେକଙ୍କୁ ତାହା ବିଚିତ୍ର ବୋଲି ପ୍ରତୀତ ହେଲେ ମଧ୍ୟ ବାସ୍ତବରେ ଏହା କେବେ ଆଶ୍ଚର୍ଯ୍ୟର ଘଟଣା ନୁହେଁ। ସୂକ୍ଷ୍ମ ଦୃଷ୍ଟିରେ ବିଚାର କଲେ ମନେହେବ ଯେ ଜଗତର ନାଥ ଜଗନ୍ନାଥଙ୍କ ପ୍ରସାଦରୁ ଏହି ପୃଥିବୀରେ ଅବତୀର୍ଣ୍ଣ ହୋଇଥିବା ବ୍ୟକ୍ତି ଜଣକ କାହିଁକି ବା ଜଗନ୍ନାଥଙ୍କ ଉପାସକ ହୋଇ ପାରିବେ କି ତାଙ୍କ ଦେହରେ ସମାହିତ ହୋଇ ରହିଥିବା ତେତ୍ରିଶ କୋଟି ଦେବାଦେବୀଙ୍କ ମଧ୍ୟରୁ କୌଣସି ଏକ ଦେବତାଙ୍କ ନିକଟରେ ନିଜକୁ ସମର୍ପଣ କରି ଦେଇପାରିବେ?

ଜଗନ୍ନାଥ ପିଲାଦିନରୁ ଖୁବ୍ ମାତ୍ରାରେ ଲାଜକୁଳା ସ୍ୱଭାବରେ ଥିଲେ। ତେଣୁ ସ୍ୱାଭାବିକ ଭାବରେ ସେ ଧୀର-ସ୍ଥିର ସ୍ୱଭାବର ହେବା ଉଚିତ। ଏପରିକି ମାଟ୍ରିକ୍ୟୁଲେସନ ପାସ କଲାବେଳେ ସେ ଯେଉଁ ଫଟୋ ଉଠାଇଥିଲେ, ତାହାକୁ ଦେଖିଲେ ତାଙ୍କ ସ୍ୱଭାବକୁ ବେଶ୍ ଭଲ ଭାବରେ ଆକଳନ କରିହୁଏ। ଫଟୋ ଉଠାଇଲା ବେଳେ ମଧ୍ୟ ତାଙ୍କର ଦୃଷ୍ଟି ସମ୍ମୁଖକୁ ନ ହୋଇ ହୋଇଛି ତଳକୁ। ସେ ମାଟ୍ରିକ ପାସ କରିଥିଲେ କଟକସ୍ଥ ମିଶନ ସ୍କୁଲ ବା ଖ୍ରୀଷ୍ଟ କଲିଜିଏଟ ସ୍କୁଲରୁ, ୧୯୫୧ ମସିହାରେ। କିନ୍ତୁ ତାଙ୍କର ପ୍ରାଥମିକ ବିଦ୍ୟାରମ୍ଭ ହୋଇଥିଲା ନିଜର ଜନ୍ମସ୍ଥାନ ବାଣପୁରରେ। ପିଲାଦିନରୁ ସେ ଖୁବ୍ ମେଧାବୀ ବୋଲି ଜଣା ପଡୁଥିଲେ। ସାଧାରଣ ପିଲାଙ୍କ ଅପେକ୍ଷା ତାଙ୍କର ସ୍ମରଣ ଶକ୍ତି ଓ ଧୀଶକ୍ତି ଅତ୍ୟନ୍ତ ପ୍ରଖର ଥିଲା। କାରଣ ଯାହା ପାଠ ପଢୁଥିଲେ, ସେସବୁକୁ ସେ ମନେ ରଖି ନେଉଥିଲେ। ତଥାପି ପିତା ଶ୍ରୀଧର ଦାସ ପୁତ୍ରର ସ୍ମରଣ ଶକ୍ତି ଉପରେ କେବଳ ଭରସା ନ କରି ଘରେ ତାଙ୍କର ପାଠପଢ଼ା ପାଇଁ ଗୋଟିଏ ପୁରୁଣାକାଳିଆ ମାଷ୍ଟ୍ରଙ୍କୁ ନିଯୁକ୍ତ କରାଇଥିଲେ। ବିଧିବଦ୍ଧ ଭାବରେ ପାରଂପାରିକ କ୍ରମରେ ଜଗନ୍ନାଥଙ୍କର ବିଦ୍ୟାରମ୍ଭ ହୋଇଥିଲା ତାଙ୍କର ଚାରି ବର୍ଷ ବୟସରୁ। ମାତ୍ର ତାଙ୍କୁ ଯେତେବେଳେ ମାତ୍ର ସାତ ବର୍ଷ ସେତେବେଳେ ସେ ଚତୁର୍ଥ ଶ୍ରେଣୀରେ ଯୋଗ ଦେଇଥିଲେ ଓ ଅକ୍ଳେଶରେ ଉଚ୍ଚସ୍ଥାନ ଅଧିକାର କରିଥିଲେ। ଗାଁ'ର ମାଟି କାଦୁଅ ରାସ୍ତା ଯଦିଓ ସହରର ରାସ୍ତା ପରି ଅତ୍ୟନ୍ତ ମନୋଲୋଭା ନଥିଲା, ତଥାପି ତାହାର ପ୍ରାକୃତିକ ସୌନ୍ଦର୍ଯ୍ୟ ଅତ୍ୟନ୍ତ ମନମୁଗ୍ଧକର ଥିଲା। ଏତେ ସ୍ୱଳ୍ପ ବୟସରେ ତାଙ୍କର ଗାଁ'କୁ ଭଲ ପାଇ ତାହାର

ସେବା କରିବାରେ ବ୍ରତୀ ହେବା କଥାକୁ ଭାବିଲେ କେବଳ ଆଶ୍ଚର୍ଯ୍ୟ ଲାଗେ ନାହିଁ, ବରଂ ଅଦ୍ଭୁତ ବୋଲି ପ୍ରତୀୟମାନ ହୋଇଥାଏ। ବାସ୍ତବରେ ଜଗନ୍ନାଥ ସେହି ଗାଁ ସ୍କୁଲରେ ପାଠ ପଢୁଥିବା ବେଳେ ୧୯୪୬ ମସିହାରେ କେତେକ ସାଥୀଙ୍କୁ ନେଇ ଗଢ଼ିଥିଲେ 'ନେହରୁ ସେବା ସଂଘ' ଓ ସେହି ସଂଘ ମାଧ୍ୟମରେ ସେମାନେ ଗାଁ ପରିବେଶକୁ ଅତ୍ୟନ୍ତ ସ୍ୱଚ୍ଛ ରଖିବା ସହ ବିଭିନ୍ନ ଉନ୍ନତିମୂଳକ କାର୍ଯ୍ୟ କରୁଥିଲେ। ସେହି ସାଙ୍ଗମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ ହରିହର ରାମ ଓ ତାଙ୍କର ବଡ଼ ଭାଇ ବୈଦ୍ୟନାଥ ରାମ। ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କୁ ସେମାନେ ସଭାପତିର ଆସନରେ ଅଳଂକୃତ କରି ଗାଁ ସଫେଇ ଠାରୁ ଆରମ୍ଭ କରି ଅନ୍ଧବିଶ୍ୱାସ ଦୂରୀକରଣ ଦିଗରେ ବିଭିନ୍ନ ପ୍ରକାର କାର୍ଯ୍ୟ କରୁଥିଲେ। ପରବର୍ତ୍ତୀ କାଳରେ ଜଗନ୍ନାଥ ପ୍ରସାଦ ଗାଁ ଛାଡ଼ି ସହରକୁ ଯାଇଛନ୍ତି ପାଠ ପଢ଼ିବାକୁ। ଛୁଟିରେ ଗ୍ରାମକୁ ଆସିଲେ ସାଙ୍ଗ ସାଥୀଙ୍କ ମେଳରେ ପୁଣି ସେହି କାମରେ ଲାଗି ପଡୁଥିଲେ। ସମୟ କ୍ରମରେ ସେ ଯେତେବେଳେ ଦିଲ୍ଲୀରେ ଅବସ୍ଥାନ କରିଛନ୍ତି, ସେତେବେଳେ ମଧ୍ୟ ପିଲାଦିନର ସେହି ସଂସ୍ଥାକୁ ଆଦୌ ଭୁଲି ନାହାନ୍ତି ବରଂ ତାହାର ଉନ୍ନତି କଳ୍ପେ ସଦା ସର୍ବଦା ସାଥୀ ହରିହରଙ୍କ ସହିତ ଯୋଗସୂତ୍ର ରଖିଛନ୍ତି। ସମୟ ସ୍ରୋତରେ 'ନେହରୁ ସେବା ସଂଘ' ଏବେ ଏକ ବିରାଟ ବଡ଼ ପ୍ରତିଷ୍ଠାନ। ଜଗନ୍ନାଥ ପ୍ରସାଦ ଅବସରପ୍ରାପ୍ତ ପ୍ରଶାସନିକ ଅଫିସର ଓ ହରିହର ଜଣେ ବ୍ରହ୍ମଚାରୀ ସନ୍ଥ ବା ସନ୍ନ୍ୟାସୀ ଭାବରେ ଜୀବନ ଯାପନ କରି ଏବେ ଆରପୁରରେ। ନିକଟ ଅତୀତରେ ଅର୍ଥାତ ୨୦୦୩ ମସିହା ଅକ୍ଟୋବର ମାସରେ ଜଗନ୍ନାଥ ପ୍ରସାଦ ଯାଇଥିଲେ ନିଜ ପିଲଦିନର ଗାଁ ବାଣପୁରକୁ, ନେହରୁ ସେବା ସଂଘର ଏକ ସଭାରେ ଯୋଗଦେବାପାଇଁ। ସେଦିନ ସେ ବାଲ୍ୟବଂଧୁ ହରିହର ରାମଙ୍କ ପ୍ରତିମୂର୍ତ୍ତିକୁ ଉନ୍ମୋଚନ କରିବା ସହିତ ଉପସ୍ଥିତ ସୁଧୀବୃନ୍ଦଙ୍କ ଉଦ୍ଦେଶ୍ୟରେ ଯେଉଁ ଅଭିଭାଷଣ ଉପସ୍ଥାପିତ କରିଥିଲେ, ତାହାକୁ ଏହି ମର୍ମରେ ଉଲ୍ଲେଖ କରାଯାଇପାରେ। ସେ କହିଥିଲେ ଯେ, "ଆଜି ମୁଁ ପ୍ରଥମ ଥର ପାଇଁ ଏ ଜାଗାକୁ ଆସିଛି ଯେତେବେଳେ କି ହରିହର ରାମ ଏଠାରେ ନାହାନ୍ତି। ତାଙ୍କ ସହିତ ମୋର ବନ୍ଧୁତା ଷାଠିଏ ବର୍ଷରୁ ଉର୍ଦ୍ଧ୍ୱ ଏବଂ ମୁଁ ତାଙ୍କୁ ସବୁବେଳେ ସମ୍ମାନ ଦେଇ ଆସିଥିଲି। ଏଥିପାଇଁ ଯେ ଆମେ ଅନ୍ୟମାନେ ସଂସାରୀ ହୋଇ ଯାଇଥିବା ବେଳେ କେବଳ ସେ ହିଁ ସନ୍ନ୍ୟାସ ନେଇ ଆମମାନଙ୍କର ପିଲାଦିନର ସ୍ୱପ୍ନକୁ ଜୀବିତ ରଖି ଲୋକସେବାରେ ନିଜକୁ ଉତ୍ସର୍ଗ କରି ଦେଇଥିଲେ।"

ଜଗନ୍ନାଥ ପ୍ରସାଦ ପିଲାଦିନୁ ଚିତ୍ର ଆଙ୍କିବା ଓ କବିତା ଲେଖିବାରେ ନିଜର ଅବସର ସମୟକୁ ବିତାଉଥିଲେ। କହିବାକୁ ଗଲେ ତାହା ଯେମିତି ତାଙ୍କର ହବି

ଥିଲା। ଅନ୍ୟପକ୍ଷରେ ସାହିତ୍ୟ ପ୍ରତି ତାଙ୍କର ସ୍ୱତଃସ୍ଫୂର୍ତ୍ତ ଆଗ୍ରହ ତାଙ୍କ ନିଜ ଘରର ପରିବେଶରୁ ତାଙ୍କୁ ଉପଲବ୍ଧ ହୋଇଥିଲା। ପିତା ଜଣେ ଶିକ୍ଷକ ଓ ପରବର୍ତ୍ତୀ କାଳରେ ଓଡ଼ିଆ ଭାଷା ସାହିତ୍ୟର ଅଧ୍ୟାପକ ହୋଇଥିବାରୁ ତାଙ୍କ ଘରେ ବିଭିନ୍ନ ପ୍ରକାର ସାହିତ୍ୟ ପୁସ୍ତକ, ପତ୍ରିକା ମହଜୁଦ ରହୁଥିଲା। ପିଲାଦିନରୁ ଜଗନ୍ନାଥ ତ ସହଜରେ ଅତ୍ୟନ୍ତ ସ୍ୱଳ୍ପଭାଷୀ ଥିଲେ, ତେଣୁ ସେ ତାଙ୍କର ଅବଶିଷ୍ଟ ସମସ୍ତ ସମୟ ସେହି ପୁସ୍ତକ ଓ ପତ୍ରପତ୍ରିକାଦିର ପଠନରେ ବିତାଇ ଦେଉଥିଲେ। ବିଶେଷ କରି ତାଙ୍କ ଘରେ ରହିଥିବା ଗୋପାଳଚନ୍ଦ୍ର ପ୍ରହରାଜଙ୍କର ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ତାଙ୍କୁ ଅନେକ ପରିମାଣରେ ଆକୃଷ୍ଟ କରିଥିଲା। ଗୋଟିଏ ଶବ୍ଦର ଅର୍ଥକୁ ଖୋଜିବାକୁ ଯାଇ ସେ ସଂକ୍ରାନ୍ତରେ ବିଭିନ୍ନ ଗଳ୍ପ ଓ ବିଭିନ୍ନ ତଥ୍ୟକୁ ପାଇ ସେ ଖୁବ୍ ଆନନ୍ଦିତ ହୋଇ ଉଠୁଥିଲେ। ଅନ୍ୟ ପକ୍ଷରେ ତାଙ୍କ ବାପାଙ୍କ ସହିତ ସାକ୍ଷାତ କରିବାକୁ ଯେତେ ସବୁ ସାହିତ୍ୟିକମାନେ ଆସୁଥିଲେ, ସେମାନଙ୍କ ଆଚରଣ ଓ କଥାବାର୍ତ୍ତା ତାଙ୍କୁ ପ୍ରକାରାନ୍ତରେ ସାହିତ୍ୟ ପ୍ରତି ଉତ୍ସାହିତ କରି ରଖୁଥିଲା। ଦଶମ ଶ୍ରେଣୀରେ ପାଠ ପଢ଼ିଲା ବେଳକୁ ତାଙ୍କର ବାପା କଟକର ଉତ୍କଳ ଖ୍ରୀଷ୍ଟିଆନ କଲେଜ ବା ବର୍ତ୍ତମାନର ଖ୍ରାଏଷ୍ଟ କଲେଜରେ ଅଧ୍ୟାପକ ହୋଇ ସାରିଲେଣି ଓ କଟକରେ ରହିଲେଣି। ସେହି କାରଣରୁ ବାପା ତାଙ୍କୁ ଗାଁ'ରୁ ଆଣି କଟକର ମିଶନ ସ୍କୁଲରେ ନାମ ଲେଖାଇ ଦେଇଥିଲେ। ଏହି କ୍ରମରେ ସେ ସେହି ମିଶନ ସ୍କୁଲ ବା ଖ୍ରାଏଷ୍ଟ କଲିଜିଏଟ ସ୍କୁଲରୁ ମାଟ୍ରିକ ପରୀକ୍ଷାରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ। ତାଙ୍କର ସ୍ଥାନ ସମଗ୍ର ବିଶ୍ୱବିଦ୍ୟାଳୟରେ ଦ୍ୱିତୀୟ ସ୍ଥାନ ଥିଲା। କଟକର ସ୍କୁଲକାଳୀନ ଜୀବନରେ ହିଁ ଜଗନ୍ନାଥ ପ୍ରସାଦଙ୍କର ପ୍ରାଥମିକ ସୃଜନ କର୍ମ ଉଭୟ କବିତା ଓ ଚିତ୍ର ମାଧ୍ୟମରେ ଅଙ୍କୁରିତ ହୋଇ ଉଠିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ।

ବାଣପୁର ସ୍କୁଲରେ ପଢୁଥିବା ବେଳେ ତାଙ୍କ ସ୍କୁଲରୁ ଗୋଟିଏ ହାତଲେଖା ପତ୍ରିକା ପ୍ରକାଶ ପାଉଥିଲା। ସେଥିରେ ସେ ପଣ୍ଡିତ ମଦନ ମୋହନ ମାଲବ୍ୟଙ୍କର ଗୋଟିଏ ସୁନ୍ଦର ଚିତ୍ର ଅଂକନ କରିଥିଲେ। ଚିତ୍ରଟି ପେନସିଲ୍‌ରେ ଅଂକନ କରାଯାଇଥିଲେ ମଧ୍ୟ ତାହାର ନିଖୁଣତା ସେତେବେଳେ ସମସ୍ତଙ୍କୁ ଅଭିଭୂତ କରି ଦେଇଥିଲା ଓ ତାଙ୍କପାଇଁ ଅଜସ୍ର ସୁନାମ ବହନ କରି ଆଣିଥିଲା। ଆଉ ଯେତେଦୂର କବିତାର କଥା ଉଠୁଛି, ସେତେବେଳେ କହିହେବ ଯେ ସେ ଜଣେ ପ୍ରତ୍ୟୁତ୍ପନ୍ନମତି ଛାତ୍ର ଥିବାରୁ ତତ୍‌କ୍ଷଣାତ କିଛି ଭାବି କବିତା ଲେଖି ଦେଉଥିଲେ ବା ଆବୃତ୍ତି କରି ପକାଉଥିଲେ। ଏହିଭଳି ତାଙ୍କ ପିଲାଦିନର ଏକ କୌତୁକିଆ ଘଟଣାକୁ ଉପସ୍ଥାପନ

କରିଛନ୍ତି ତାଙ୍କର ଜଣେ ସ୍କୁଲ ଜୀବନର ବଂଧୁ ଇଂଜିନିୟର ମୁରଲୀଧର ଶତପଥୀ। ମୁରଲୀଧରଙ୍କର ଘର ଜଗନ୍ନାଥ ପ୍ରସାଦଙ୍କ ଘର ପାଖରେ। ତାଙ୍କ ବାପା ଓ ଜଗନ୍ନାଥ ପ୍ରସାଦଙ୍କ ବାପା ଉଭୟ ବାଣପୁର ହାଇସ୍କୁଲରେ ଶିକ୍ଷକ ଥିଲେ ଓ ପାଖାପାଖି ଘରେ ରହୁଥିଲେ। ଏହି ଦୃଷ୍ଟିକୋଣରୁ ଜଗନ୍ନାଥ ଓ ମୁରଲୀ ଦୁଇ ସାଙ୍ଗରେ ପରିଣତ ହୋଇ ଯାଇଥିଲେ। ମୁରଲୀଧର ଜଗନ୍ନାଥଙ୍କୁ 'ଜଗନା' ବୋଲି ଡାକୁଥିଲେ। ଏକାଠି ଖେଳିବା-ବୁଲିବାଦି ସବୁକାମ କରାଯାଉଥିଲା। ୧୯୪୮ରେ କିନ୍ତୁ ଜଗନ୍ନାଥ ପ୍ରସାଦ ବାଣପୁର ଛାଡ଼ି କଟକ ଆସିଲେ ପାଠ ପଢ଼ିବାପାଇଁ। ତେଣୁ ଖରାଦିନ ଛୁଟିରେ ବା ଦଶହରା ଛୁଟିରେ ଯେତେବେଳେ ତାଙ୍କ ବାପା କଟକରୁ ଗାଁ'କୁ ଆସୁଥିଲେ, ସେତେବେଳେ ଜଗନ୍ନାଥ ମଧ୍ୟ ତାଙ୍କ ବାପାଙ୍କ ସହିତ ଗାଁ'କୁ ଆସୁଥିଲେ। ଉପସ୍ଥାପିତ ଘଟଣାଟି ପ୍ରାୟ ସେହି ସମୟର। ଏହି ଦୁଇସାଙ୍ଗ ପ୍ରାୟ ସକାଳେ ଓ ଉପରବେଳା ସାଙ୍ଗ ହୋଇ ବୁଲି ବାହାରନ୍ତି। ଏବଂ ସେହି ସମୟରେ ସେମାନଙ୍କର ଦେଖାହୁଏ ପଣ୍ଡିତ ବିନାୟକ ମିଶ୍ରଙ୍କ ସହିତ। ସେ ଥିଲେ କଲିକତା ବିଶ୍ୱବିଦ୍ୟାଳୟର ଓଡ଼ିଆ ଅଧ୍ୟାପକ ଓ ତାଙ୍କ ଘର ମଧ୍ୟ ଥିଲା ସେମାନଙ୍କ ଘରର ନିକଟବର୍ତ୍ତୀ, ଠିକ ରାସ୍ତା ଉପରେ। ସେ ଏହି ଦୁଇ ବାଲ୍ୟବନ୍ଧୁଙ୍କୁ ଯଦିଓ ଶ୍ରଦ୍ଧା କରୁଥିଲେ, ହେଲେ ସେ ସେମାନଙ୍କୁ ଦେଖିବା ମାତ୍ରେ ପାଖକୁ ଡାକୁଥିଲେ ଓ ବିଭିନ୍ନ ପ୍ରଶ୍ନ ପଚାରୁଥିଲେ। ତାଙ୍କର ପ୍ରଶ୍ନଗୁଡ଼ିକ ପ୍ରାୟ ସାହିତ୍ୟ ଓ ଇତିହାସ ଭିତ୍ତିକ ରହୁଥିଲା। ଥରେ ସେ ତାଙ୍କ ଘରର ପୂର୍ବରେ ରହିଥିବା ଓ ଘରୁ ସ୍ପଷ୍ଟ ଭାବରେ ଦୃଶ୍ୟମାନ ହେଉଥିବା ଭାଲେରୀ ପାହାଡ଼ ଉପରେ ମୁହେଁ ମୁହେଁ ପ୍ରବନ୍ଧ ରଚନା କରିବାକୁ କହିଲେ। ଆଉଥରେ ସେ ସନ୍ଧ୍ୟା ବେଳର ଦୃଶ୍ୟ ବର୍ଣ୍ଣନା କରିବାକୁ କହିଥିଲେ। ଏହିଭଳି ପରସ୍ଥିତିକୁ ସମ୍ଭାଳି ନେଉଥିଲେ ଜଗନ୍ନାଥ ପ୍ରସାଦ। ମୁହେଁ ମୁହେଁ କବିତା ବା ପ୍ରବନ୍ଧ ରଚନା କରି ଦେଉଥିଲେ। ହେଲେ ସେମାନେ ଯେ ଅକସ୍ମାତ୍ ଅପ୍ରତିଭ ହୋଇ ପଡୁନଥିଲେ ତାହା ନୁହେଁ; ସମ୍ଭବତଃ ସେହି କାରଣରୁ ସେମାନେ ଆଉ ଏପରି ସମସ୍ୟାକୁ ସାମନା କରିବାକୁ ଇଚ୍ଛା ପ୍ରକାଶ କଲେନାହିଁ। ପଣ୍ଡିତଙ୍କୁ ଦେଖିଲା ମାତ୍ରେ ସେମାନଙ୍କ ମନରେ ଭୟ ସଂଚରି ଯାଉଥିଲା। ତେଣୁ ସେମାନେ ସେମାନଙ୍କ ଭ୍ରମଣ ସମୟରେ ରାସ୍ତାର ଦିଗ ବଦଳାଇଦେଲେ। ଏହି ବାସ୍ତବ ଘଟଣାଟି ସ୍ୱତଃ ମନରେ ବିଶିଷ୍ଟ କଥାଶିଳ୍ପୀ ମନୋଜ ଦାସଙ୍କ 'ଲକ୍ଷ୍ମୀର ଅଭିସାର' ଗଳ୍ପକୁ ମନେ ପକାଇ ଦିଏ। ଗଳ୍ପରେ ମଧ୍ୟ ଲକ୍ଷ୍ମୀ ପଣ୍ଡିତଙ୍କୁ ଡରୁଥିଲେ, କାରଣ ସେ ପିଲାଙ୍କୁ ଦେଖିଲେ ପଣିକିଆ ବା ମାନସାଙ୍କ ପଚାରୁଥିଲେ। ସେହି କାରଣରୁ ଲକ୍ଷ୍ମୀ ମଧ୍ୟ ପଣ୍ଡିତଙ୍କ ସମ୍ମୁଖକୁ ଯିବାକୁ ଭୟ କରୁଥିଲା।

ବାଳକ ଜଗନ୍ନାଥ ସେତେବେଳେ ପ୍ରଜାତନ୍ତ୍ର ପୃଷ୍ଠାରେ ନିଜର ଲେଖନୀ ଚାଳନା କରିବା ସହିତ ବର୍ଷକୁ ଥରେ 'ବିଷୁବ ମିଳନ'କୁ ଯାଉଥିଲେ। ଅନେକ ଥର ସେହି ଉତ୍ସବରେ ବଡ଼ ବଡ଼ ବିଦ୍ୱାନ୍‌ଙ୍କ ସହିତ ଜଗନ୍ନାଥଙ୍କୁ ମଧ୍ୟ ବକ୍ତା ଭାବରେ ନିମନ୍ତ୍ରିତ କରାଯାଇଥାଏ। ସେତେବେଳରୁ ତାଙ୍କର ଏକ ଅଭ୍ୟାସ ରହିଥିଲା ଯେ ଅଳ୍ପ କହିବେ ଓ ଭଲ କହିବେ। ସେ ଘରୁ କ'ଣ କହିବେ ସେ ସଂକ୍ରାନ୍ତରେ ପୂର୍ବ ପ୍ରସ୍ତୁତି ସହ ନିଜର ଅଭିଭାଷଣକୁ ସଭାରେ ଉପସ୍ଥାପିତ କରୁଥିଲେ। ପିଲାଦିନର ଏହି ଅଭ୍ୟାସ ବଡ଼ ହେଲାପରେ ମଧ୍ୟ ତାଙ୍କ ନିକଟରେ ବଳବତ୍ତର ରହିଛି। ତାଙ୍କ ଦ୍ୱାରା ବିଭିନ୍ନ ସଭା ସମିତିରେ ପ୍ରଦତ୍ତ ଲିଖିତ ବକ୍ତବ୍ୟ ଏବେ ଗ୍ରନ୍ଥାକାରରେ 'ଆମ ଓଡ଼ିଆ ଆମର ଓଡ଼ିଶା' ଓ 'ଆମ ଭାଷା ଆମ ସଂସ୍କୃତି' ଶିରୋନାମାରେ ଉପଲବ୍ଧ। ସେ ସବୁ ପ୍ରବନ୍ଧ ପଢ଼ିଲେ ଜାଣିହୁଏ ଯେ ସେ ସଭାସମିତିରେ ନିଜ ବକ୍ତବ୍ୟରେ ଯେଉଁ ଉଦ୍ଦେଶ୍ୟକୁ ଶ୍ରୋତାଙ୍କ ସମ୍ମୁଖରେ ଉପସ୍ଥାପିତ କରିବାକୁ ଚାହିଛନ୍ତି, ତାହାକୁ କେତେ ସଂକ୍ଷିପ୍ତରେ ଓ ସରଳ ଭାବରେ ଉପସ୍ଥାପିତ କରିଛନ୍ତି। ତାହାହିଁ ତାଙ୍କ ଅଭିଭାଷଣର ମୁଖ୍ୟ ବୈଶିଷ୍ଟ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ।

ପିତା ଶ୍ରୀଧର ଓ ମା' ଇନ୍ଦୁଦେବୀ ଶ୍ରଦ୍ଧାରେ ପୁଅ ଜଗନ୍ନାଥଙ୍କୁ ଜଗନ୍ ବୋଲି ଡାକୁଥିଲେ। ପୁତ୍ରର ବିଦ୍ୟା ଓ ବୁଦ୍ଧିରେ ପିତା ଅତ୍ୟନ୍ତ ଗର୍ବିତ ଥିଲେ। ସବୁବେଳେ ସେ ଚାହୁଁଥିଲେ ପିଲାମାନେ କିପରି ଭଲ ପାଠପଢ଼ି ଭଲ ଚାକିରି କରି ଭଲରେ ରୁହନ୍ତୁ। କାରଣ ସେ ଯେଉଁ ଦରିଦ୍ରତା ଭିତର ଦେଇ ଗତି କରିଛନ୍ତି, ତାହା ତାଙ୍କ ପିଲାମାନଙ୍କ ଜୀବନରେ ଯେପରି ନ ଆସୁ – ସେ ସବୁବେଳେ ତାହା ହିଁ ଚାହୁଁଥିଲେ। ଖ୍ରୀଷ୍ଟ କଲେଜରେ ଜଗନ୍ନାଥ ପ୍ରସାଦଙ୍କ ଅଧ୍ୟୟନର ସମୟ ସୀମା ହେଉଛି : ୧୯୫୧–୧୯୫୩। ସେତେବେଳେ ଖ୍ରୀଷ୍ଟ କଲେଜରେ ଓଡ଼ିଆ ବିଭାଗରେ ଅଧ୍ୟାପକ ଥାଆନ୍ତି ପଠାଣି ପଟ୍ଟନାୟକ। ସେ ମଧ୍ୟ ନିଜର ଅନ୍ୟତମ ସହକର୍ମୀ ଶ୍ରୀଧର ଦାସଙ୍କ ପୁତ୍ର ଜଗନ୍ନାଥ ପ୍ରସାଦଙ୍କୁ ସେତେବେଳେ ଜଗନ୍ ବୋଲି ସମ୍ବୋଧନ କରୁଥିଲେ। ସେତେବେଳେ ଶ୍ରଦ୍ଧାରେ ଆଉ କେହି କେହି ତାଙ୍କୁ 'ବୁଢ଼ା' ବୋଲି ମଧ୍ୟ ସମ୍ବୋଧନ କରୁଥିଲେ।

ଜଗନ୍ନାଥ ପ୍ରସାଦ ଖ୍ରୀଷ୍ଟ ମହାବିଦ୍ୟାଳୟରେ ଆଇ.ଏ. ପାଠ ପଢ଼ିବା ସମୟରେ ନିଜର ଇଚ୍ଛାଧୀନ ବିଷୟ ଭାବରେ ଇତିହାସ, ଅର୍ଥନୀତି ଓ ଓଡ଼ିଆ ବିଷୟକୁ ଚୟନ କରିଥିଲେ। ସେତେବେଳେ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗରେ ଅନ୍ୟତମ ଅଧ୍ୟାପକ ଭାବରେ କାର୍ଯ୍ୟ କରୁଥିବା ଅଧ୍ୟାପକ ପଠାଣି ପଟ୍ଟନାୟକଙ୍କର

ଅଧ୍ୟାପନା ଶୈଳୀ ବେଶ୍ ଆକର୍ଷଣୀୟ ଥିଲା। ଅନ୍ୟପକ୍ଷରେ ସେ ଜଣେ ଉଦ୍ୟମୀ ପୁରୁଷ ଥିଲେ। ତେଣୁ ସାହିତ୍ୟ ପ୍ରତି ବିଶେଷ ଆଗ୍ରହ ରହିଥିବା କେତେକ ଛାତ୍ରଙ୍କୁ ଚୟନ କରି ସେ ଏକ ସାହିତ୍ୟାନୁଷ୍ଠାନ ଆରମ୍ଭ କରିଥିଲେ। ପ୍ରଥମେ ତାହାର ନାମ ଦିଆ ଯାଇଥିଲା "ଅଭ୍ୟୁଦୟ ପାଠଚକ୍ର"। ପରେ କିନ୍ତୁ ଏହା 'ଅଭ୍ୟୁଦୟ ସାହିତ୍ୟ ସମିତି' ନାମରେ ନାମିତ ହୋଇଥିଲା। ସେହି ଛାତ୍ରମାନଙ୍କ ମଧ୍ୟରେ ଜଗନ୍ନାଥ ପ୍ରସାଦ ଥିଲେ ପ୍ରମୁଖ ଶ୍ରେଣୀୟ ଓ ଆଦ୍ୟ ସହଯୋଗୀ; ଅନ୍ୟମାନଙ୍କ ଭିତରେ ରହିଥିଲେ ସୁଧାଂଶୁ ରାଉତରାୟ, ବିବେକାନନ୍ଦ ଦାସ, ରାମନାରାୟଣ ହୋତା ଓ କୈଳାସ ବିହାରୀ ଦାସ ପ୍ରମୁଖ ବିଭିନ୍ନ ଛାତ୍ର। ଅତୀତ ଦିନର ସ୍ମୃତି ଚାରଣ କରି ଅଧ୍ୟାପକ ପଠାଣି ପଟ୍ଟନାୟକ ଲେଖିଛନ୍ତି, "ପ୍ରତ୍ୟେକ ରବିବାର ଅପରାହ୍ଣରେ ସତୀଚଉରା ଶ୍ମଶାନର ନିର୍ଜନ ପରିବେଶରେ ଆମର ବୈଠକ ବସୁଥିଲା କୌଣସି ଏକ ବୃକ୍ଷତଳେ ଶୀତଳ ପରିବେଶରେ। ସାହିତ୍ୟର ବିଭିନ୍ନ ବିଷୟରେ ଆଲୋଚନା ହୁଏ।" ସେତେବେଳେ ତାଙ୍କର ଅନ୍ୟତମ ସହଯୋଗୀ ଥିଲେ ଶ୍ରୀନିବାସ ମିଶ୍ର। ଅନେକ ବୈଠକରେ ଅଧ୍ୟାପକ ଶ୍ରୀନିବାସ ମିଶ୍ର, ଅଧ୍ୟାପକ ଶ୍ରୀଧର ଦାସ ଓ ଅଧ୍ୟାପକ ବାନାମ୍ବର ଆଚାର୍ଯ୍ୟଙ୍କୁ ଆମନ୍ତ୍ରଣ କରାଯାଉଥିଲା ସାହିତ୍ୟାଲୋଚନାରେ ଅଂଶ ଗ୍ରହଣ କରିବାପାଇଁ। ସେମାନେ ମଧ୍ୟ ନିମନ୍ତ୍ରଣ ରକ୍ଷା କରୁଥିଲେ ଓ ତରୁଣ ଛାତ୍ରମାନଙ୍କୁ ସାହିତ୍ୟ ଦିଗରେ ଉତ୍ସାହିତ କରୁଥିଲେ।

ଅନ୍ୟପକ୍ଷରେ ସେତେବେଳେ ସକାଳେ କଲେଜ ହେଉଥିବାରୁ କେତେକ ପ୍ରବୀଣ ସାହିତ୍ୟିକ ମଧ୍ୟ ସୌଖୀନ ଛାତ୍ରଭାବେ ମହାବିଦ୍ୟାଳୟରେ ଯୋଗ ଦେଇ ଅଧ୍ୟୟନ କରୁଥିଲେ। ସେମାନଙ୍କ ମଧ୍ୟରୁ ଅନ୍ୟତମ ହେଉଛନ୍ତି କବି ରାଧାମୋହନ ଗଡ଼ନାୟକ ଓ ନାଟ୍ୟକାର ଭଞ୍ଜ କିଶୋର ପଟ୍ଟନାୟକ। ତେଣୁ ଜଗନ୍ନାଥ ପ୍ରସାଦଙ୍କ ସାହିତ୍ୟମନସ୍କତା ଯେ ଏହିଭଳି ଏକ ନିରୋଳା ପରିବେଶରୁ କ୍ରମଶଃ ସମୃଦ୍ଧ ହୋଇ ଉଠି ନଥିବ, ତାହା କିଏ କହିବ ?

ଜଗନ୍ନାଥ ପ୍ରସାଦ ଏହି ଇଣ୍ଟରମିଡ଼ିଏଟ ଛାତ୍ର ଜୀବନରେ ଅନେକ କବିତା ଲେଖିଥିଲେ। ସେସବୁ ମଧ୍ୟରୁ କେତେକ ପ୍ରଜାତନ୍ତ୍ର ପୃଷ୍ଠାରେ ଓ କଲିକତାରୁ ପ୍ରକାଶ ପାଉଥିବା 'ଆସନ୍ତାକାଲି' ବା ବମ୍ବେରୁ ପ୍ରକାଶିତ 'କୁଂକୁମ' ପତ୍ରିକାରେ ପ୍ରକାଶ ଲାଭ କରିଥିଲା। ଜଗନ୍ନାଥ ପ୍ରସାଦ ତାଙ୍କ ପିଲାଦିନ କଥାକୁ ସ୍ମରଣ କରି କୁହନ୍ତି ଯେ, "ମୋର ପ୍ରଥମ କବିତା ବୋଧିହୁଏ ପ୍ରକାଶ ପାଇଥିଲା ମୋତେ ଯେତେବେଳେ ୧୩ ବର୍ଷ (ବମ୍ବେରୁ ପ୍ରକାଶିତ କୁଂକୁମପତ୍ରିକାରେ, ୧୯୪୯ରେ।"

ତେବେ କଲେଜ ମ୍ୟାଗାଜିନ୍‌ରେ ପ୍ରକାଶିତ ତାଙ୍କର 'ଚିଲିକା' କବିତାଟି ଥିଲା ଅନେକ ଆକର୍ଷଣର କେନ୍ଦ୍ରବିନ୍ଦୁ। ଏବଂ ୧୯୫୧ରେ ପ୍ରକାଶିତ ପ୍ରଥମ କବିତା ସଂକଳନ 'ସ୍ତବକ' ତାଙ୍କୁ ପ୍ରଥମ କରି ନିଜର ସାଙ୍ଗ ସାଥୀଙ୍କ ମେଳରେ ଓ ଆତ୍ମୀୟ ସ୍ୱଜନଙ୍କ ମଧ୍ୟରେ କବି ଭାବରେ ପରିଚିତି ଆଣି ଦେଇଥିଲା। ୩୯ଟି କବିତା ଥିବା ଏହି କବିତା ସଂକଳନଟି 'ଓଡ଼ିଶା ପବ୍ଲିଶିଙ୍ଗ ହାଉସ, କଟକ' ଦ୍ୱାରା ପ୍ରକାଶିତ ହୋଇଥିଲା। ସେତେବେଳେ ତାହାର ମୂଲ୍ୟ ଥିଲା ଚାରିଅଣା। ସବୁଠାରୁ ବଡ଼ କଥା ହେଉଛି ଯେ ଏହି ପୁସ୍ତକର ପ୍ରକାଶନ ପରେ ଡକ୍ଟର ହରେକୃଷ୍ଣ ମହତାବ ତାଙ୍କୁ 'ତରୁଣ କବି' ବୋଲି ସମ୍ବୋଧନ କରିବାକୁ ଲାଗିଲେ। ତେବେ ପରବର୍ତ୍ତୀ କାଳରେ ଏହି ସ୍ତବକର କବିତାମାନ ଯେ ଅନେକ ତରୁଣ ପ୍ରାଣକୁ ଆକୃଷ୍ଟ କରିଥିଲା ତାହାର ପ୍ରମାଣ ମିଳେ ସାଂପ୍ରତିକ ସମୟର ଅନ୍ୟତମ ଶିଶୁ-ସାହିତ୍ୟିକ ପ୍ରଫେସର ମହେଶ୍ୱର ମହାନ୍ତିଙ୍କ ସ୍ମୃତିଚାରଣରୁ ଏବଂ କଲେଜ ମ୍ୟାଗାଜିନର କବିତା 'ଚିଲିକା' କିଭଳି ଅତ୍ୟନ୍ତ ଉତ୍କୃଷ୍ଟ ଧରଣର କବିତା ଥିଲା ତାହା ଜଣାପଡ଼େ ତାଙ୍କର ଅନ୍ୟତମ ସମସାମୟିକ ତଥା ୟୁନିଅନ୍ ପବ୍ଲିକ୍ ସର୍ଭିସ କମିଶନର ପୂର୍ବତନ ଚେୟାରମ୍ୟାନ ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ହୋତାଙ୍କ ମନ୍ତବ୍ୟରୁ। ସେ ନିଜ ଅତୀତର ସ୍ମୃତିଚାରଣ କରି କୁହନ୍ତି : "Earlier I had read a poem, CHLIKA written by Jagannath Babu in Oriya and published in the Christ College magazine in 1952. After I read it several times for sheer literary joy, I thought that the Oriya poem was one of the best written by any Oriya poet." 'ସ୍ତବକ' ସଂପର୍କରେ ମହେଶ୍ୱର ମହାନ୍ତି କୁହନ୍ତି ଯେ ତାଙ୍କର କିଶୋର ବୟସରେ ଏକ ତିନି ଅକ୍ଷର ବିଶିଷ୍ଟ କବିତା ବହିର କବିତା ତାଙ୍କୁ ଆତ୍ମହରା କରିଥିଲା ଓ ତାହାର ପ୍ରଥମ କବିତା ସମେତ କେତେକ କବିତା ଏବେ ବି ତାଙ୍କର ଆତ୍ମସ୍ଥ। କେବଳ କବିଙ୍କ ନାମ ମନେ ରହି ଯାଇଥିଲା ଯେ ଜଗନ୍ନାଥ ପ୍ରସାଦ ଦାସ। ମାତ୍ର ପରବର୍ତ୍ତୀ ପର୍ଯ୍ୟାୟରେ ଆଉ ତାଙ୍କୁ ସାହିତ୍ୟ ଜଗତରେ ଦେଖିବାକୁ ନ ମିଳିବାରୁ ସେ ତାଙ୍କୁ ସବୁବେଳେ ଖୋଜି ବୁଲୁଥିଲେ। ପରେ ପ୍ରାୟ ପଚାଶ ବର୍ଷ ପରେ ସେ ତାଙ୍କର ପ୍ରତିବେଶୀ ସାହିତ୍ୟିକ ପଠାଣି ପଟ୍ଟନାୟକଙ୍କୁ କଥୋପକଥନ ଛଳରେ ସେହି କଥା ପଚାରିବାରୁ ପ୍ରତ୍ୟୁତ୍ତରରେ ଜାଣିଲେ ଯେ ସେ ହେଉଛନ୍ତି ବର୍ତ୍ତମାନର ପ୍ରଖ୍ୟାତ ସାହିତ୍ୟିକ ଜଗନ୍ନାଥ ପ୍ରସାଦ ଦାସ। ତାଙ୍କଠାରୁ ଫୋନ ନମ୍ବର ନେଇ କଥାବାର୍ତ୍ତା ହେବା ପରେ ଜାଣିଲେ ଯେ ସେହି ତିନି ଅକ୍ଷର ବିଶିଷ୍ଟ କବିତା ବହିର ଶୀର୍ଷକ ଥିଲା 'ସ୍ତବକ' ବୋଲି। ବାସ୍ତବରେ କବିଙ୍କ ପ୍ରଥମ କବିତା

ସଂକଳନର ଅନେକ କବିତା ତତ୍କାଳୀନ ଅନେକ ତରୁଣଙ୍କ ପ୍ରାଣରେ ପୁଲକ ସଂଚାର କରିଥିଲା ।

ଜଗନ୍ନାଥ ପ୍ରସାଦ ନିଜର ବାଲ୍ୟକାଳରୁ ପିତାଙ୍କର ସେହି କଠୋର ଶୃଙ୍ଖଳାଗତ ଜୀବନ ଶୈଳୀକୁ ନିରୀକ୍ଷଣ କରିଥିଲେ ଓ ସେହି ଧାରାରେ ଯେପରି ନିଜକୁ ଗଢ଼ି ତୋଳିଥିଲେ । ଖ୍ରୀଷ୍ଟ ମହାବିଦ୍ୟାଳୟରେ ଅଧ୍ୟୟନ ସମୟରେ ସେ ଥରେ ନିଜର ସାଙ୍ଗସାଥୀଙ୍କୁ ଧରି ବୁଲି ବାହାରିଲେ ଧବଳେଶ୍ୱର । ଉଦ୍ଦେଶ୍ୟ କିନ୍ତୁ ଥିଲା ସେଠାରେ 'ନିଭୃତ ନିଳୟ'ରେ ବାସ କରୁଥିବା କବିବର ରାଧାନାଥ ରାୟଙ୍କ ପୁତ୍ର ଶଶିଭୂଷଣ ରାୟଙ୍କୁ ସାକ୍ଷାତ କରିବା, ତାଙ୍କ ସହିତ କିଛି ସମୟ ଅତିବାହିତ କରିବା, ତାଙ୍କ ହସ୍ତାକ୍ଷରର ନମୁନା ସଂଗ୍ରହ କରିବା ଓ ତାଙ୍କ ସହିତ ଫଟୋ ଉଠାଇବା । ସେଦିନ ସେ ନିଭୃତ ନିଳୟରୁ ଫେରି ଏକ କବିତା ମଧ୍ୟ ଲେଖିଥିଲେ, 'ଶଶିଭୂଷଣ', ଯାହାକି ଲିଖିତ ହେବାର ପ୍ରାୟ ଏକ ବର୍ଷ ପରେ ଶଶିଭୂଷଣଙ୍କ ମହାପ୍ରୟାଣର ଠିକ ପରେ ପ୍ରଜାତନ୍ତ୍ରର ୧୯୫୩ ମସିହା ସେପ୍ଟେମ୍ବର ୬ ତାରିଖ ସଂସ୍କରଣରେ ପ୍ରକାଶିତ ହୋଇଥିଲା । ଶଶିଭୂଷଣଙ୍କ ପାଖରୁ ଫେରିବା ପରେ ଶଶିଭୂଷଣ ଜଗନ୍ନାଥ ପ୍ରସାଦଙ୍କ ପିତାଙ୍କ ନିକଟକୁ ସେ ସଂକ୍ରାନ୍ତୀୟ ଏକ ପତ୍ର ଲେଖିଥିଲେ । ସେତେବେଳକୁ ବାର୍ଦ୍ଧକ୍ୟଜନିତ କାରଣରୁ ତାଙ୍କର ହାତ କଂପୁଥାଏ ଓ ସେ ଲେଖିବାକୁ ସଂପୂର୍ଣ୍ଣ ଅସମର୍ଥ ହୋଇ ପଡ଼ିଥାନ୍ତି । ତଥାପି ସେ ଥରିଲା ହାତର ଅସୁନ୍ଦର ଅକ୍ଷରରେ ଯେଉଁ ପତ୍ର ଲେଖିଥିଲେ, ତାହାକୁ ଜଗନ୍ନାଥ ପ୍ରସାଦ ସ୍ମୃତି ସ୍ୱରୂପ ଏ ଯାବତ୍ ପାଖରେ ସାଇତି ରଖିଛନ୍ତି ।

ଏହି ସମୟକୁ କବି ସଚ୍ଚିଦାନନ୍ଦ ରାଉତରାୟ ଏକ ପ୍ରତିଷ୍ଠିତ କବି ଭାବରେ ଖ୍ୟାତି ଅର୍ଜନ କରି ସାରିଲେଣି । ରୋମାଣ୍ଟିକ୍ ପ୍ରବଣତା ମଧ୍ୟ ଦେଇ ସେ ପ୍ରଗତିବାଦୀ ରାଜ୍ୟରେ ପ୍ରବେଶ କରିଛନ୍ତି ଓ କ୍ରମେ ଆଧୁନିକତାର ପିତୃପୁରୁଷ ଭାବରେ ପରିଚିତ ହୋଇଛନ୍ତି । ମାତ୍ର ଜଗନ୍ନାଥ ପ୍ରସାଦ ସେତେବେଳ ରୋମାଣ୍ଟିକ କବିତାର ଛନ୍ଦ ଓ ମେଳରେ ଯେତିକି ଅଭିଭୂତ ହୋଇ ପଡ଼ିଛନ୍ତି, ସେତିକି ପରିମାଣରେ ମାର୍କ୍ସବାଦୀ ଚେତନାରେ ମଧ୍ୟ ମନ୍ତ୍ରମୁଗ୍ଧ ହୋଇ ଉଠିଛନ୍ତି । ବାମପନ୍ଥୀ ଚେତନାରେ ସେ ଏକାତ୍ମ ହୋଇ ଯୋଗ ଦେଇଛନ୍ତି 'ଷ୍ଟୁଡେଣ୍ଟସ୍ ଫେଡେରେସନ'ରେ ଓ ସେତେବେଳେ ସେହି ଅନୁଷ୍ଠାନରେ ତାଙ୍କର ସହଯୋଗୀ ସାଥୀ ଭାବରେ ରହିଥାନ୍ତି ମନୋଜ ଦାସ ଓ ବ୍ରଜନାଥ ରଥ । ତେଣୁ ତାଙ୍କର ଏହି ସମୟର କବିତାମାନରେ ରୋମାଣ୍ଟିକ୍ ପ୍ରବଣତା ସାଙ୍ଗକୁ ସାମ୍ୟବାଦୀ ଚେତନା ବେଶ୍ ପରିସ୍ଫୁଟ ହୋଇଉଠିଛି ।

# ଆତ୍ମାନ୍ୱେଷଣରୁ ଆତ୍ମପ୍ରତିଷ୍ଠା: ଏକ ସଂକଳ୍ପସିଦ୍ଧ ଯାତ୍ରା

ଜଗନ୍ନାଥ ପ୍ରସାଦ ଖ୍ରୀଷ୍ଟ ମହାବିଦ୍ୟାଳୟରୁ ଯାଇ ରେଭେନ୍ସା ମହାବିଦ୍ୟାଳୟରେ ଯୋଗ ଦିଅନ୍ତି ୧୯୫୩ ମସିହାରେ, ବି.ଏ. ଶ୍ରେଣୀରେ। ଅର୍ଥନୀତିକୁ ସେ ସମ୍ମାନର ବିଷୟ ଭାବରେ ଗ୍ରହଣ କରି ଅଧ୍ୟୟନ କରନ୍ତି। ସେତେବେଳେ ସେଠାରେ ଇଂରାଜୀ ଶିକ୍ଷକ ଥାଆନ୍ତି ସର୍ବେଶ୍ୱର ଦାସ ଓ ବିଧୁଭୂଷଣ ଦାସ, ଯାହାଙ୍କର ଅଧ୍ୟାପନା ଶୈଳୀରେ ଜଗନ୍ନାଥ ପ୍ରସାଦ ଆକର୍ଷିତ ହୋଇ ସେମାନଙ୍କର ଅତ୍ୟନ୍ତ ନିକଟତର ହୋଇ ଯାଇଥିଲେ। ସେହି ରେଭେନ୍ସାରେ ତାଙ୍କର ସାଙ୍ଗ ଭାବରେ ରହିଥାନ୍ତି ଦେବ ପଟ୍ଟନାୟକ, ଯିଏ କି ପରବର୍ତ୍ତୀ ସମୟରେ ସେହି ରେଭେନ୍ସା ମହାବିଦ୍ୟାଳୟରେ ଇଂରାଜୀ ବିଭାଗରେ ପ୍ରଫେସର ହୋଇଥିଲେ। ଏହି ସମୟରେ ରେଭେନ୍ସା କଲେଜରେ ଫ୍ରେଞ୍ଚ ଭାଷାର ଶିକ୍ଷା ଦିଆ ଯାଉଥାଏ। ଜଗନ୍ନାଥ ପ୍ରସାଦ ବଂଧୁ ଦେବ ପଟ୍ଟନାୟକଙ୍କ ସହିତ ସେତେବେଳେ ଏହି ଫ୍ରେଞ୍ଚ ଭାଷା ଶିକ୍ଷାରେ ମଧ୍ୟ ମନୋନିବେଶ କରିଥିଲେ। ଅନ୍ୟପକ୍ଷରେ ଏହି କଲେଜ ଅଧ୍ୟୟନ କାଳରେ ମଧ୍ୟ ସେ କାର୍ଲମାର୍କ୍ସଙ୍କ ସହିତ ଜର୍ଜ ବର୍ଣ୍ଣାଡ ଶ, ଦସ୍ତୋଭସ୍କି ଓ ସିଗମଣ୍ଡ ଫ୍ରୟେଡଙ୍କୁ ଭଲ ଭାବରେ ଅଧ୍ୟୟନ କରନ୍ତି ଓ ବାମପଂଥୀ ଚିନ୍ତାଧାରରେ ନିଜକୁ ସମାହିତ କରନ୍ତି। ଅନ୍ୟପକ୍ଷରେ ସେ ସେହି ସମୟରେ ଷ୍ଟୁଡେଣ୍ଟ ଫେଡେରେସନ୍‌ର ସଭ୍ୟ ଥିବାରୁ ତାଙ୍କର ଚିନ୍ତାଧାରା ଅନେକାଂଶରେ ବାମପଂଥୀ ହୋଇ ଯାଇଥିଲା। ସେହି ଚିନ୍ତାଧାରାରୁ ସେତେବେଳେ ଆତ୍ମପ୍ରକାଶ କରିଥିଲା 'ଦିଗନ୍ତ' ପରି ଏକ ଭିନ୍ନ ସ୍ୱାଦର ପତ୍ରିକା। ଏହି ପତ୍ରିକାର ସଂପାଦକ ଥିଲେ ତାଙ୍କର ସହପାଠୀ ତଥା ସଂପ୍ରତିକ ସାହିତ୍ୟ ଜଗତର ପ୍ରଥିତଯଶା ଗାଳ୍ପିକ ଶ୍ରୀ ମନୋଜ ଦାସ ଓ ସେ ନିଜେ ଥିଲେ ତାହାର ସହସଂପାଦକ। ଏହା

ସେତେବେଳେ ଓଡ଼ିଶାର ସାହିତ୍ୟିକ ବାତାବରଣକୁ ଏକ ଭିନ୍ନ ପଥ ଦେଖାଇବାରେ ସମର୍ଥ ହୋଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ। ଏହି ପତ୍ରିକାରେ ସମକାଳୀନ ଅନେକ ଖ୍ୟାତନାମା ଲେଖକମାନଙ୍କ ଲେଖାରେ ସମୃଦ୍ଧ ହୋଇ ଉଠୁଥିଲା।

କଲେଜରେ ସେ ପାଠ ପଢୁଥିବା ବେଳେ 'ଝଂକାର' ଏକ ସୁପ୍ରତିଷ୍ଠିତ ସାହିତ୍ୟ ପତ୍ରିକା ଭାବରେ ବେଶ୍ ଆତ୍ମପ୍ରତିଷ୍ଠା ପାଇ ସାରିଥାଏ। ସେହି ପତ୍ରିକାକୁ ପ୍ରାୟ ସାହିତ୍ୟପ୍ରେମୀ ପ୍ରତ୍ୟେକ ଛାତ୍ର ନିୟମିତ ପାଠ କରୁଥିଲେ। ଜଗନ୍ନାଥ ପ୍ରସାଦ ସେତେବେଳେ ମଧ୍ୟ ସେହି ଝଂକାର ପୃଷ୍ଠାରେ ନିଜର କବିତା ପ୍ରକାଶ କରୁଥଲେ। ତାହା ଛଡ଼ା ତତ୍କାଳୀନ ଅନ୍ୟାନ୍ୟ ସାହିତ୍ୟ ପତ୍ରିକା ଯେପରି: ଡଗର, ଆସନ୍ତାକାଲି, ପ୍ରଭାତୀ ଓ ଆଶା ପ୍ରଭୃତି ପତ୍ରିକା ତାଙ୍କ କବିତାରେ ପୁଷ୍ଟ ହୋଇ ଉଠୁଥିଲା। ବିଶିଷ୍ଟ ସାହିତ୍ୟିକ ତଥା ପ୍ରଖ୍ୟାତ ରାଜନୀତିଜ୍ଞ ଚିନ୍ତାମଣି ପାଣିଗ୍ରାହୀଙ୍କ ଦ୍ୱାରା ସଂପାଦିତ 'ଶାନ୍ତି ସମାଚାର' ପତ୍ରିକାରେ ସେ ଚାଇନିଜ ଲେଖକ ଲୁ-ଶୁନ୍‌ଙ୍କ ଗଳ୍ପକୁ ଓଡ଼ିଆରେ ଅନୁବାଦ କରିଥିଲେ। ଅନୂଦିତ ଗଳ୍ପଟି ଥିଲା 'ମୋ ନିଜ ଗାଁ'। ପାଠ ପଢ଼ିବା ସହିତ ସାହିତ୍ୟ ପ୍ରତି ତାଙ୍କର ନିଷ୍ଠା କ୍ରମଶଃ ବୃଦ୍ଧି ପାଇବାକୁ ଲାଗୁଥାଏ।

ଜଗନ୍ନାଥ ପ୍ରସାଦ ଅର୍ଥନୀତି ସମ୍ମାନରେ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନରେ ରହି ଉତ୍ତୀର୍ଣ୍ଣ ହେଲେ। ସେତେବେଳେ ଭାରତର ସର୍ବପୁରାତନ ତୃତୀୟ ବିଶ୍ୱବିଦ୍ୟାଳୟ ଭାବରେ ଆହ୍ଲାବାଦ ବା ପ୍ରୟାଗ ବିଶ୍ୱବିଦ୍ୟାଳୟର ନାମ ଅତ୍ୟନ୍ତ ଜଣାଶୁଣା ଥିଲା। ଜଗନ୍ନାଥ ପ୍ରସାଦ ଏକ ସ୍ନାତକୋତ୍ତର ବୃତ୍ତି ଲାଭ କରି ଆଉ କେତେଜଣ ସାଥୀଙ୍କ ସହିତ ଓଡ଼ିଶା ଛାଡ଼ି ଆହ୍ଲାବାଦ ଯାତ୍ରାକଲେ ଉଚ୍ଚଶିକ୍ଷା ଲାଭ କରିବାପାଇଁ। ଆହ୍ଲାବାଦରେ ତାଙ୍କର ଅଧ୍ୟୟନ କାଳ ଥିଲା ମାତ୍ର ଦୁଇ ବର୍ଷ : ୧୯୫୫-୧୯୫୭।

ଆହ୍ଲାବାଦ ବିଶ୍ୱବିଦ୍ୟାଳୟରେ ଜଗନ୍ନାଥ ପ୍ରସାଦ ରାଜନୀତି ବିଜ୍ଞାନରେ ଏମ୍.ଏ. ଅଧ୍ୟୟନ କରିବା ସହିତ ସେଠିକାର ପେଣ୍ଟିଂ କ୍ଲାସରେ ଡିପ୍ଲୋମା କରିବା ପାଇଁ ମଧ୍ୟ ଯୋଗ ଦେଇଥିଲେ। ପିଲାଦିନର ଚିତ୍ରାଂକନର ରୁଚି ଏହି ମର୍ମରେ ଯେପରି ଆନୁଷ୍ଠାନିକ ରୂପ ନେଲା। ରାଜନୀତି ବିଜ୍ଞାନରେ ସ୍ନାତକୋତ୍ତର ସାଙ୍ଗକୁ ଚିତ୍ରକଳାକୁ ସେ ଅକ୍ଲେଶରେ ଆୟତ୍ତ କରି ପାରିଥିଲେ।

ଏହି ସମୟରେ ସେ ରହୁଥିଲେ ଗଂଗାନାଥ ଝା ହଷ୍ଟେଲରେ। ନିର୍ଦ୍ଦିଷ୍ଟ ସମୟରେ ସେ ଏମ୍.ଏ.ରେ ପ୍ରଥମ ଶ୍ରେଣୀ ପ୍ରାପ୍ତ ହୋଇ ଉତ୍ତୀର୍ଣ୍ଣ ହେଲେ ଓ ତାଙ୍କୁ

ସେହି ଆହ୍ଲାବାଦ ବିଶ୍ୱବିଦ୍ୟାଳୟରେ ରାଜନୀତି ବିଜ୍ଞାନରେ ସାମୟିକ ସମୟର ଏକ ଅଧ୍ୟାପକ ଚାକିରିଟିଏ ମିଳିଗଲା।

ଆହ୍ଲାବାଦ ବିଶ୍ୱବିଦ୍ୟାଳୟରେ ସେ ୧୯୫୭ ମସିହାରେ ରାଜନୀତି ବିଜ୍ଞାନର ଅଧ୍ୟାପକ ଭାବରେ ଯୋଗ ଦିଅନ୍ତି। ସେତେବେଳେ ମଧ୍ୟ ସେ ସେହି ପୂର୍ବରୁ ରହୁଥିବା ହଷ୍ଟେଲରେ ରହୁଥିଲେ। କାରଣ ସେ ଏମ୍.ଏ. ପାସ କରିବା ପରେ ପରେ ସେହି ବିଶ୍ୱବିଦ୍ୟାଳୟ ଅଧୀନରେ ରାଜନୀତି ବିଜ୍ଞାନରେ ଗବେଷଣା କାର୍ଯ୍ୟ ଆରମ୍ଭ କରି ଦେଇଥିଲେ ଏବଂ ସେହି ଦୃଷ୍ଟିରୁ ସେ ସେହି ହଷ୍ଟେଲରେ ଥିଲେ ଜଣେ ଛାତ୍ର-ଗବେଷକ ଓ ଅନ୍ୟପକ୍ଷରେ ମଧ୍ୟ ଜଣେ ଅଧ୍ୟାପକ ମଧ୍ୟ। ସେ ସେତେବେଳେ ବିଶ୍ୱବିଦ୍ୟାଳୟରେ "Indian Constitution and Indian Culture" ବିଷୟ ପଢ଼ାଉଥିଲେ। ଅନ୍ୟପକ୍ଷରେ ସେ ମହାବିଦ୍ୟାଳୟରେ ଅଧ୍ୟାପନା କରିବା ସହିତ ନିଜକୁ ଆଇ.ଏ.ଏସ୍. ପାଇଁ ପ୍ରସ୍ତୁତ କରିବାକୁ ଲାଗିଲେ। ତାଙ୍କର ପ୍ରସ୍ତୁତି ସଂପର୍କରେ ପରବର୍ତ୍ତୀ କାଳର ୟୁନିଅନ୍ ପବ୍ଲିକ ସର୍ଭିସ କମିଶନର ଚେୟାରମ୍ୟାନ ଶ୍ରୀ ପି. ସି. ହୋତା କୁହନ୍ତି, "I hardly saw him reading at night. Invariably, he used to go out with friends in the evening and return to the hostel for dinner and a good night's sleep." ଶେଷରେ ୧୯୫୭ ମସିହାରେ ସେ ଆଇ.ଏ.ଏସ୍. ପରୀକ୍ଷାରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇ୧୯୫୮ ମସିହା ମଇ ମାସ ୧୨ ତାରିଖରେ ଭାରତୀୟ ପ୍ରଶାସନିକ ସେବାରେ ଯୋଗଦାନ କରିବା ପୂର୍ବକ ଦକ୍ଷିଣ ଦିଲ୍ଲୀର ମେଟକାଫ୍ ହାଉସ ସ୍ଥିତ ଟ୍ରେନିଂ ସ୍କୁଲରେ ଭାରତୀୟ ପ୍ରଶାସନିକ ସେବାର ଟ୍ରେନିଂ ପାଇଁ ଯୋଗଦେଲେ। ଏହି କ୍ରମରେ ଜଗନ୍ନାଥ ପ୍ରସାଦଙ୍କର ଅଧ୍ୟାପନା ଜୀବନରେ ପୂର୍ଣ୍ଣଚ୍ଛେଦ ପଡ଼ିବା ସଙ୍ଗେ ଏକ ପ୍ରଶାସନିକ ଜୀବନର ଅୟମାରମ୍ଭ ଘଟିଲା। ମାତ୍ର ଗୋଟିଏ ବର୍ଷର ଅଧ୍ୟାପକ ଜୀବନରେ ସେ ଛାତ୍ର-ଛାତ୍ରୀମାନଙ୍କର ଅତ୍ୟନ୍ତ ପ୍ରିୟ ହୋଇ ଉଠିଥିଲେ। ତାଙ୍କର ସେହି ଅଧ୍ୟାପନା ଶୈଳୀ ସଂବନ୍ଧରେ ସ୍ମୃତିଚାରଣ କରି ଆହ୍ଲାବାଦ ବିଶ୍ୱବିଦ୍ୟାଳୟର ରାଜନୀତି ବିଜ୍ଞାନ ବିଭାଗର ବିଭାଗୀୟ ମୁଖ୍ୟ ପ୍ରଫେସର ଏ.ବି. ଲାଲ କୁହନ୍ତି, "Jagannath Prasad is one of the finest products of the Utkal and Allahabad Universities. In my opinion he would make an ideal University teacher. His joining the IAS would mean a loss to the academic world." ୧୯୫୯ରେ ଟ୍ରେନିଂର ସମାପ୍ତି ପରେ ସେ ପ୍ରଥମେ ଓଡ଼ିଶାକୁ ଫେରି ଆସିଷ୍ଟାଣ୍ଟ କଲେକ୍ଟର ଭାବରେ ଗଞ୍ଜାମର

ଛତ୍ରପୁରଠାରେ ଯୋଗ ଦେଇଥିଲେ। ସେହି ଦିନଠାରୁ ଆରମ୍ଭ ହୋଇଗଲା ତାଙ୍କ କର୍ମମୟ ଜୀବନର ଭିନ୍ନ ଏକ ଅଧ୍ୟାୟ।

ସେ ନିଜର ପ୍ରଶାସନିକ ସ୍ତରରେ ଲୋକମାନଙ୍କ କଲ୍ୟାଣପାଇଁ ଅହରହ ପରିଶ୍ରମ କରିବାକୁ ଲାଗିଲେ। ସଂପୂର୍ଣ୍ଣ ଭାବରେ ଭୁଲିଗଲେ ଯେ ସେ ଜଣେ କବି ବା ଚିତ୍ରଶିଳ୍ପୀ ବୋଲି। କାର୍ଯ୍ୟାଳୟରେ କାର୍ଯ୍ୟଭାର ବୃଦ୍ଧି ପାଇବା ସହିତ କ୍ରମଶଃ ନିଜ ଭିତରେ ଥିବା ସମସ୍ତ ପ୍ରକାର ସୃଜନ କର୍ମ ଯେମିତି ଗଭୀର ଅବଚେତନ ସ୍ତରକୁ ଠେଲି ହୋଇଗଲା। ତେବେ ନିଜ ମଧ୍ୟରେ ରହିଥିବା ଅସୀମ ଜିଜ୍ଞାଷାକୁ ଚରିତାର୍ଥ କରିବାକୁ ଯାଇ ଚାକିରି କାଳ ମଧ୍ୟରେ ମଧ୍ୟ ସେ ଅନେକ ଥର ଅଧ୍ୟୟନର ପ୍ରବୃତ୍ତିରେ ବାନ୍ଧି ହୋଇ ପଡ଼ିଛନ୍ତି। ନିଜକୁ ହାଲୁକା କରିବାପାଇଁ ଅବଶ୍ୟ ସେ କେବେ ଟେନିସ୍ ଖେଳିଛନ୍ତି ତ କେବେ ବ୍ୟାଡମିଣ୍ଟନ୍; ପୁଣି କେବେ ଗୁରୁ ହରିଦାସ ଚକ୍ରବର୍ତ୍ତୀଙ୍କଠାରୁ ଗିଟାର ମଧ୍ୟ ଶିକ୍ଷା କରିଛନ୍ତି। ସେଥିପାଇଁ କିନ୍ତୁ କେବେ ତାଙ୍କର ଚାକିରିଜନିତ ଦାୟିତ୍ୱକୁ ସଂପନ୍ନ କରିବାରେ ଅସୁବିଧା ହୋଇନାହିଁ; ବରଂ ଯାହା ସେ ଶିକ୍ଷା କରିଛନ୍ତି, ତାହା କୌଣସି ନା କୌଣସି ପରିପ୍ରେକ୍ଷୀରେ ତାଙ୍କୁ ଅନେକାଂଶରେ ସାହାଯ୍ୟ କରିଛି ଆଗକୁ ଆଗକୁ ଗତି କରିବାପାଇଁ। ଏହି ଯେପରି ସେ ଚାକିରିର ପରବର୍ତ୍ତୀ କାଳରେ କେବେ ଗବେଷଣା ମଧ୍ୟରେ ନିଜକୁ ହଜାଇ ଦେଇଛନ୍ତି ତ କେବେ ବୈଦେଶିକ ଭାଷା ଶିକ୍ଷା କରିବା ଦିଗରେ ନିଜକୁ ତଲ୍ଲୀନ କରି ଦେଇଛନ୍ତି। ଓଡ଼ିଶାର ପାରଂପରିକ ଚିତ୍ରକଳା ଉପରେ ତାଙ୍କର ଆନ୍ତରିକ ଗବେଷଣା ଯେପିରି ପୃଥିବୀରେ ଓଡ଼ିଶାର ଚିତ୍ରକଳାକୁ ମହିମାନ୍ୱିତ କରିଛି, ସେହି ପରି ୧୯୭୧ ମସିହାରେ ଜର୍ମାନ ଭାଷା ଶିକ୍ଷା ତାଙ୍କ ମଧ୍ୟରେ ଦେଶବିଦେଶର ସାହିତ୍ୟକୁ ଏକ ସୂତ୍ରରେ  ଅନୁଭବ କରାଇବାର ଏକ ଅପୂର୍ବ ସୁଯୋଗ ପ୍ରଦାନ କରିଛି। ଅନ୍ୟପକ୍ଷରେ ଯେତେଦୂର ତାଙ୍କ ପ୍ରଶାସନିକ ଚାକିରି କାର୍ଯ୍ୟର ପ୍ରସଙ୍ଗ କଥା ଉଠେ, ସେତେବେଳେ ନିଜ କାର୍ଯ୍ୟକ୍ଷେତ୍ରର ପରିସର ମଧ୍ୟକୁ ଆସୁଥିବା ସାଧାରଣ ଲୋକମାନେହିଁ ସେତେବେଳେ ତାଙ୍କ ପାଇଁ ମୁଖ୍ୟ ହୋଇ ଉଠିଛନ୍ତି। ସେହି କାରଣରୁ ସମ୍ଭବତଃ ସେତେବେଳେ ତାଙ୍କର କର୍ମ ସହିତ ଓଡ଼ିଶାର ଭାଗ୍ୟ ଧୀରେ ଧୀରେ ସଂଯୋଜିତ ହୋଇଗଲା।

# ନୂତନ ସଂସାର, ନୂତନ ସର୍ଜନା ଓ ପ୍ରବହମାନ ସଂଭାବନାର ପୃଥିବୀ

ଜଗନ୍ନାଥ ପ୍ରସାଦଙ୍କର ୧୯୬୦ ମସିହାରେ ରାଉରକେଲାରେ ପୋଷ୍ଟିଂ। ପ୍ରଶାସନିକ ଚାକିରି ମଧ୍ୟ ଦୁଇ ବର୍ଷ ଅତିକ୍ରମ କରି ସାରିଥାଏ। କର୍ମକ୍ଷେତ୍ରର ଦାୟିତ୍ୱସଂପନ୍ନ କାର୍ଯ୍ୟ ନିଜର ଅଭିଜ୍ଞତା କ୍ରମେ ଜଟିଳରୁ ସରଳ ହୋଇ ଆସୁଥାଏ। ଏହି ସମୟରେ କଟକର ମିତ୍ରା ମହାନ୍ତିଙ୍କ ସହିତ ତାଙ୍କର ବିବାହ ସଂପନ୍ନ ହୁଏ ସେହି ୧୯୬୦ ମସିହା ଜୁନ୍ ମାସରେ। ବିବାହପରେ ସେ ସେହି ଇସ୍ପାତ ନଗରୀ ରାଉରକେଲାରେ ନିଜର ନୂତନ ସଂସାରକୁ ନେଇ ଅବସ୍ଥାପନ କରନ୍ତି।

ମିତ୍ରା ମହାନ୍ତି (ଦାସ) ଜଣେ ଉଚ୍ଚଶିକ୍ଷିତା ତଥା ତତ୍କାଳୀନ ଆକାଶବାଣୀର ଜଣେ ପ୍ରତିଷ୍ଠିତା କଣ୍ଠଶିଳ୍ପୀ। ସେ ରେଭେନ୍ସା ମହାବିଦ୍ୟାଳୟରୁ ଇଂରାଜୀ ସାହିତ୍ୟରେ ସ୍ନାତକୋତ୍ତର ଶିକ୍ଷା ସଂପନ୍ନ କରିଥିଲେ। ଅନ୍ୟପକ୍ଷରେ ଜଣେ ବେତାର ଶିଳ୍ପୀ ଭାବରେ ମଧ୍ୟ ତାଙ୍କର ବେଶ୍ ପ୍ରତିଷ୍ଠା ରହିଥିଲା। ଏ ସଂପର୍କରେ ଅନ୍ୟତମ ଗବେଷକ ତଥା ଜଗନ୍ନାଥ ପ୍ରସାଦଙ୍କ ଅନ୍ୟତମ ବନ୍ଧୁ ଗଣେଶ୍ୱର ମିଶ୍ର ମତ ବ୍ୟକ୍ତ କରି କୁହନ୍ତି, "ଅକ୍ଷୟ ମହାନ୍ତି, ସିକନ୍ଦର ଆଲାମ୍ ଓ ପ୍ରଣବ ପଟ୍ଟନାୟକଙ୍କ ଭଳି ପ୍ରମୁଖ କଣ୍ଠଶିଳ୍ପୀମାନଙ୍କର ସେ ଥିଲେ ସମସାମୟିକ ଓ ସହଗାୟିକା। ରେଭେନ୍ସା କଲେଜର ସାଂସ୍କୃତିକ କାର୍ଯ୍ୟକ୍ରମ ତଥା ଦିଲ୍ଲୀରେ ଅନୁଷ୍ଠିତ ଆନ୍ତଃବିଶ୍ୱବିଦ୍ୟାଳୟ ଯୁବ ଉତ୍ସବରେ ସେ ଭାଗ ନେଇଥିଲେ। ୧୯୬୦ରେ ତାଙ୍କର ବିବାହ ପରେ କିନ୍ତୁ ତାଙ୍କ ସଂଗୀତ ସାଧନା ପୂର୍ବଭଳି ଅବ୍ୟାହତ ରହିଲାନାହିଁ। କେବଳ ବଂଧୁମହଲରେ କେବେ କେବେ ସେ ସଂଗୀତ ଗାୟନ କଲେ। ତେବେ ଏବେ ମଧ୍ୟ ଅନେକେ ପଞ୍ଚମ ଦଶକରେ ମିତ୍ରାଙ୍କ ସଂଗୀତ ଗାନ ସ୍ମରଣ କରନ୍ତି।"

ମିତ୍ରା ଦେବୀ ସ୍ୱାମୀଙ୍କ ସହିତ ଦିଲ୍ଲୀରେ ଅବସ୍ଥାପନ କରିବା ସହିତ କଟକ ଆକାଶବାଣୀରୁ ତାଙ୍କର ସଂପର୍କ ଦୂରେଇଯାଏ। ମାତ୍ର ଦିଲ୍ଲୀ ଆକାଶବାଣୀରେ ସେ ଓଡ଼ିଆ ସମ୍ବାଦ ପାଠିକା ଭାବରେ ଯୋଗଦାନ କରି ପୁଣି ଓଡ଼ିଆ ଶ୍ରୋତାଙ୍କ ନିକଟକୁ ଫେରି ଆସନ୍ତି। କେବଳ ସେତିକି ନୁହେଁ ସେ ହିନ୍ଦୀ, ବଙ୍ଗଳା ଓ ଇଂରାଜୀ ଭାଷାର ଅନେକ ଗ୍ରନ୍ଥକୁ ଓଡ଼ିଆରେ ଅନୁବାଦ କରି ଓଡ଼ିଆ ଅନୁବାଦ ସାହିତ୍ୟକୁ ପୁଷ୍ଟ କରିବାରେ କ୍ଷମ ହୋଇଛନ୍ତି। ସେହିସବୁ ପୁସ୍ତକମାନଙ୍କ ମଧ୍ୟରୁ ପ୍ରମୁଖ ସ୍ଥାନ ଅଧିକାର କରିଥିବା ପୁସ୍ତକଗୁଡ଼ିକ ହେଲା : ନୀଲା ଚାନ୍ଦ (ହିନ୍ଦୀ), ଗୋଷ୍ଠବିହାରୀର ଜୀବନଯାପନ (ବଙ୍ଗଳା) ଇତ୍ୟାଦି। ଏହାଛଡ଼ା ଦିଲ୍ଲୀରେ ନ୍ୟାସନାଲ କାଉନସିଲ ଫର୍ ଏଜୁକେଶନାଲ ରିସର୍ଚ୍ଚ ଏଣ୍ଡ ଟ୍ରେନିଙ୍ଗ୍ (NCERT)ର କେତେକ ଶିକ୍ଷଣୀୟ କାର୍ଯ୍ୟକ୍ରମରେ ସେ ନିଜର କଣ୍ଠଦାନ କରି ଡବିଂ କାର୍ଯ୍ୟ ସଂପନ୍ନ କରିଛନ୍ତି ଏବଂ ଦିଲ୍ଲୀର ମହିଳାମାନଙ୍କ ଉନ୍ନତି କଳ୍ପେ ବିଭିନ୍ନ କାର୍ଯ୍ୟ କରିବା ସହିତ 'ଉତ୍କଳିନୀ' ସଂସ୍ଥା ସହିତ ମଧ୍ୟ ସଂପୃକ୍ତ ହୋଇଛନ୍ତି। ସେ ଯେ ନିଜସ୍ୱ ରୀତିରେ କେବଳ କାର୍ଯ୍ୟ କରିଛନ୍ତି ତାହା ନୁହେଁ, ସ୍ୱାମୀଙ୍କ ସହିତ ମିଶି ନାଟକରେ ମଧ୍ୟ ଅଭିନୟ କରି ନିଜର ଦକ୍ଷତାକୁ ପ୍ରଦର୍ଶନ କରିଛନ୍ତି। ଏହି କ୍ରମରେ ଜଗନ୍ନାଥ ପ୍ରସାଦଙ୍କ ନାଟକ 'ଜଣେ ଜଣକ ପାଇଁ'ର ମଞ୍ଚନ (କଟକ, ୧୯୭୨) ନିଶ୍ଚିତ ଭାବରେ ଉଲ୍ଲେଖନୀୟ।

ଏହିପରି ଭାବରେ ମିତ୍ରାଦେବୀ ଓ ଜଗନ୍ନାଥ ପ୍ରସାଦ ତାଙ୍କର ନୂତନ ସାଂସାରିକ ଜୀବନରେ ଛନ୍ଦି ହୋଇ ଯାଇଛନ୍ତି ଓ ନୂତନ ସର୍ଜନା ଭାବରେ ତାଙ୍କ କୋଳକୁ ଆସିଛନ୍ତି ସେମାନଙ୍କର ଏକମାତ୍ର କନ୍ୟା ମୋନାଲିସା ୧୯୬୨ରେ। ଲିଓନାର୍ଡୋ-ଡା-ଭିନ୍‌ସିଙ୍କର ବିଶ୍ୱପ୍ରସିଦ୍ଧ କଳାକୃତି 'ମୋନାଲିସା'ର ନାମାନୁସାରେ ହିଁ ସେ ସେତେବେଳେ ଝିଅର ନାମକରଣ କରିଥିଲେ। ଝିଅ ମୋନାଲିସାର ଡାକନାମ ଥିଲା 'ମୋନା'। ତାହାର ସମସ୍ତ ଶିକ୍ଷା ଦୀକ୍ଷା ଇତ୍ୟାଦି ସେହି ଦିଲ୍ଲୀରେ ସମାପନ ହୋଇଥିଲା।

ପରବର୍ତ୍ତୀ କାଳରେ ଝିଅ ମୋନା ବିବାହ କରିଥିଲେ ଜଣେ ଜାପାନୀଙ୍କୁ। ଝିଅ ମୋନାଙ୍କର ବକ୍ତବ୍ୟ ଏଠାରେ ପ୍ରଣିଧାନ ଯୋଗ୍ୟ। ସେ କୁହନ୍ତି, "When I chose to marry outside our community, he never once made me feel that I had done something unacceptable." ଝିଅର ସଂସାର ଏବେ ଆମେରିକାରେ। ଖରାଦିନେ ସେ ପ୍ରାୟ ଝିଅଙ୍କ ନିକଟକୁ ଯାଆନ୍ତି। ସେଠି ବିଳମ୍ବିତ

ରାତି ପର୍ଯ୍ୟନ୍ତ ନାତୁଣୀମାନଙ୍କ ସହିତ ମଜା କରିବା ଓ ସେମାନଙ୍କୁ ବିଭିନ୍ନ ପ୍ରକାର ଗପ କହିବାରେ ସେ ହଜି ଯାଆନ୍ତି। ଝିଅ ବା ନାତୁଣୀମାନେ କେବେ ବି ଭାବି ପାରନ୍ତି ନାହିଁ ଯେ ଏତେ ମଜାଳିଆ ମଣିଷ ଯିଏ କି ତାଙ୍କର ବାପା ବା ଅଜା, ସେ ଏକଦା ଜଣେ ଖୁବ୍ ଗମ୍ଭୀର ସ୍ୱଭାବର ପ୍ରଶାସନିକ ଅଫିସର ଥିଲେ ବୋଲି। ନାତୁଣୀ ହିନାଙ୍କ ଶବ୍ଦରେ, "He is most fun grown up I know. He can fix anything that is broken and takes care of any problems we have. He is really smart" (He's Smart / Heena Das Kuwayama) ଏବଂ ନାତୁଣୀ ସାଚିଙ୍କ ଶବ୍ଦରେ "He is so simple and fun that I forget he is such a famous writer. But he is a huge inspiration in my life" (Aja Booja / Saachi Das Kuwayama)

ଜଗନ୍ନାଥ ପ୍ରସାଦ ଓ ମିତ୍ରାଙ୍କ ଦାମ୍ପତ୍ୟ ଜୀବନରେ ତାଙ୍କ କୋଳକୁ ଯେପରି ଆସିଛନ୍ତି କନ୍ୟାରତ୍ନ ଭାବରେ 'ମୋନା', ଅନୁରୂପ ଭାବରେ ସେମାନେ ସାରସ୍ୱତ ଜଗତର କୋଳକୁ ମଧ୍ୟ ଦାନ କରିଛନ୍ତି ମୁଲକ୍ ରାଜ ଆନନ୍ଦଙ୍କ ବହୁ ଚର୍ଚ୍ଚିତ ଉପନ୍ୟାସ 'କୁଲି'ର ଅନୁବାଦ। ପୁସ୍ତକଟି ପ୍ରକାଶିତ ହୋଇଛି ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ସଂସ୍ଥା, ଭୁବନେଶ୍ୱରରୁ ୧୯୮୯ ମସିହାରେ। ପରେ ପରେ ସ୍ତ୍ରୀ ମିତ୍ରାଙ୍କ ସହିତ ମିଶି ସେ ସୃଷ୍ଟି କରିଛନ୍ତି 'ଅ ଆ ଇ ଏବଂ କ ଖ ଗ' ପରି ବେଶ ଆକର୍ଷଣୀୟ ଶିଶୁ ସାହିତ୍ୟ ୨୦୦୩ ମସିହାରେ। ଅବଶ୍ୟ କୁଲିର ପ୍ରକାଶନ କାଳକୁ ସମୟର ଚକ ଅନେକ ବାଟ ଆଗେଇ ଗଲାଣି। ଏକାନ୍ତ ନିଷ୍ଠାପର ଭାବରେ ପରିଶ୍ରମ କରି ସେ ଭାରତୀୟ ପ୍ରଶାସନିକ ସେବାରେ ଯୋଗଦାନ କରି ଶେଷରେ ମନର ଶାନ୍ତିପାଇଁ ସେହି ସରକାରୀ ଚାକିରିର ବନ୍ଧନକୁ ସ୍ୱେଚ୍ଛାରେ ପରିତ୍ୟାଗ କରି ସାରିଲେଣି। ଆରମ୍ଭ ମଧ୍ୟ ହୋଇ ସାରିଲାଣି ଏକ ନିରୋଳା ସାରସ୍ୱତ ଯାତ୍ରା।

ବାସ୍ତବରେ ଜଗନ୍ନାଥ ପ୍ରସାଦଙ୍କ ସଂସାର ଏକ ପରିପୂର୍ଣ୍ଣ ସଂସାର। ଝିଅ (ମୋନା), ଜ୍ୱାଇଁ (ୟାସୁଶି) ଓ ଦୁଇ ନାତୁଣୀ (ସାଚି ଓ ହିନା) ଗହଣରେ ସେ ଏବେ ବେଶ ଶାନ୍ତିରେ ରହିଛନ୍ତି। ଏବେ ସେ ପରିଣତ ବୟସରେ ଅବତୀର୍ଣ୍ଣ। ବୟସ ତାଙ୍କୁ ନିରୁଦ୍ୟମ କରି ପାରିନାହିଁ; ଅଧିକନ୍ତୁ ତାଙ୍କର ସଂବିତ୍ ଏବେ ବି ଏପରି ଚଳଚଞ୍ଚଳ ରହିଛି ଯେ ବୟସ ତା' ନିକଟରେ ପରାସ୍ତ ସ୍ୱୀକାର କରିବାକୁ ବାଧ୍ୟ ହୋଇଛି। ସାରସ୍ୱତ ସୃଜନକର୍ମରେ ସେ ଏବେ ବି ସକ୍ରିୟ। ତାଙ୍କର ସଂରଚନାର ପୃଥିବୀ ଏବେ ବି ଅତ୍ୟନ୍ତ ସମ୍ଭାବନାମୟ।

# କଳାହାଣ୍ଡି ସମସ୍ୟା: ଯନ୍ତ୍ରଣା ଜର୍ଜରିତ ଏକ କରୁଣ ଅନୁଭବ

ଜଗନ୍ନାଥ ପ୍ରସାଦ ତାଙ୍କ ସମଗ୍ର ଚାକିରି କାଳ ମଧ୍ୟରେ ଯେତିକି ସ୍ଥାନ ବୁଲିଛନ୍ତି, ତନ୍ମଧ୍ୟରୁ କଳାହାଣ୍ଡି ତାଙ୍କ ଜୀବନରେ ଏକ ଗଭୀର ପ୍ରଭାବ ପକାଇଛି। କଳାହାଣ୍ଡିରେ ତାଙ୍କର ଅବଧି ୧୯୬୩ ରୁ ୧୯୬୬, ମାତ୍ର ତିନିବର୍ଷ। ଏହି ସ୍ୱଳ୍ପ ସମୟ ମଧ୍ୟରେ ଯେତେ ସବୁ ଘଟଣା ଘଟି ଯାଇଛି, ତାହା ତାଙ୍କ କବିପ୍ରାଣକୁ ଖୁବ ପରିମାଣରେ ବିଚଳିତ କରି ଦେଇଛି।

ଆଜି କଳାହାଣ୍ଡିକୁ ପ୍ରାୟ ପୃଥିବୀର ସମସ୍ତ ଶିକ୍ଷିତ ଲୋକେ ଜାଣନ୍ତି କେବଳ ତାହାର ଦରିଦ୍ରତା ପାଇଁ। ମାତ୍ର ବିଗତ ଶତାବ୍ଦୀର ଷଷ୍ଠ ଦଶକ ବେଳକୁ କଳାହାଣ୍ଡିକୁ ଭାରତ ତ ଛାଡ଼, ପ୍ରାୟ ଓଡ଼ିଶାରେ କେହି ଭଲ ଭାବରେ ଜାଣି ନଥିଲେ। ପ୍ରାୟ ୧୯୬୫ ମସିହା ବେଳକୁ କଳାହାଣ୍ଡିରେ ଚାଉଳର ଅଭାବ ଦେଖାଦେଲା। ବର୍ଷା ନ ହେବାରୁ ମରୁଡ଼ି ପଡ଼ିବାର ସମ୍ଭାବନା ରହିଥାଏ। କଲେକ୍ଟର ଭାବରେ ପ୍ରଥମରୁ ହିଁ ସେ ଏହି ସମ୍ଭାବନାଟିକୁ ଉପଲବ୍ଧି କରି ପାରିଥିଲେ। କେବଳ କଲେକ୍ଟର ଭାବରେ ସେ ଯେ ଉପଲବ୍ଧି କରିଥିଲେ କହିଲେ ବୋଧହୁଏ ଭୁଲ୍ ହେବ। ମୁଁ ତ କହିବି କବି ଭାବରେ ସେ ଏହାକୁ ସମ୍ଭବତଃ ଖୁବ୍ ଭଲ ଭାବରେ ଉପଲବ୍ଧି କରିଥିଲେ। କାରଣ ଆମର ଗୋଟିଏ ଉକ୍ତି ରହିଛି ଯେ, "ଅପାରେ କାବ୍ୟ ସଂସାରେ କବିରେବ ପ୍ରଜାପତି।" ଅର୍ଥାତ୍ କବି ହେଉଛନ୍ତି ଏ ପୃଥିବୀରେ ପ୍ରଜାପତି ବ୍ରହ୍ମାଙ୍କ ତୁଲ୍ୟ। ସେ ସବୁବେଳେ ଭବିଷ୍ୟତକୁ ନିଜ ଆଖି ଆଗରେ ଅନୁଭବ କରିପାରନ୍ତି। ଠିକ୍ ସେହିପରି ଜଗନ୍ନାଥ ପ୍ରସାଦ କଳାହାଣ୍ଡି ଆସନ୍ନ ଭବିଷ୍ୟତର ପୂର୍ବାନୁମାନକରି ସେଠାରୁ ଚାଉଳର ରପ୍ତାନି ଉପରେ ରୋକ୍ ଲଗାଇ ସରକାରଙ୍କୁ ପତ୍ର ଲେଖିଥିଲେ।

ସେ ତାଙ୍କର ଗଦ୍ୟମୟ ଶୈଳୀରେ ସରକାରଙ୍କୁ ଯାହା ରିପୋର୍ଟ ଦେଇଥିଲେ, ତାହା ପ୍ରାୟ ଏହିପରି :

- There is an abnormal increase in crimes.
- Need has arisen for gratuitous relief.
- Reports are being received about starvation deaths.
- The general condition of the health of the people has deteriorated
- There is huge incidence of cases of malnutrition.
- Cases of desertion of children have been reported.
- There is a heavy in flux of beggars, cripples and diseased persons to town and big villages in search of alms. There are also signs of increased wandering and restlessness of beggers in these areas.
- Families have deserted their villages in search of work elsewhere.
- Free kitchens are attracting quite a number of disabled persons.

ମାତ୍ର ସବୁ ପଦସ୍ଥ ଅଫିସରମାନେ ତ ସମାନ ନୁହନ୍ତି । ତାଙ୍କର ମନୋଭାବକୁ ବୁଝିବାକୁ ସେତେବେଳେ କେହି ସକ୍ଷମ ହେଲେ ନାହିଁ । ତେଣୁ ଓଡ଼ିଶା ସରକାରଙ୍କ ଯୋଗାଣ ବିଭାଗ ସେ ଦେଇଥିବା ନିର୍ଦ୍ଦେଶକୁ ପ୍ରତ୍ୟାହର କରିବାପାଇଁ ଯେଉଁ ଚିଠି ଲେଖିଲେ, ତାହା ଏହିପରି:

Supply Department.

Letter No. 18312 Dt. 23.08.65

To

Collector, Kalahandi

Sub: Restriction on movement of Stocks outside the district of Kalahandi.

Ref: Your memo no. 4202 dt. 15-8-65.

(ii) Your D.O. letter No. 4196 / CS dt. 15.8.65.

addressed to Secy. Supply Deptt.

I am directed to say that on reviewing the food position in the state it has been decided by Government to continue despatches of rice from Kalahandi District to the Central Reserves as before according to the 75% levy on the production of rice from the mills as per Levy- Procurement Order, 1964. It is further decided that movement of rice to Rourkela and other industrial areas in the State through free trade channels should not be restricted. I am, therefore, to request you that the instruction issued by you to all the Regional Civil Supplies staff of your district and the Railway Authorities in your letter dated 15th August, 1965 should be withdrawn forthwith under intimation to this Deptt.

For building up of reserves within your district, you may purchase as much of rice as available with the millers and other dealers without interfering with the normal movement of stocks to the centre and to the industrial areas in the State.

ସେତେବେଳେ ସେ ଅନୁଭବ କରିଛନ୍ତି ଶହେ ବର୍ଷ ତଳେ ଅର୍ଥାତ୍ ୧୮୬୫ ମସିହାରେ ତତ୍କାଳୀନ କମିଶନର ରେଭେନ୍ସା ସାହେବ ବାଲେଶ୍ୱର କଲେକ୍ଟରଙ୍କୁ ନିକଟକୁ ମଧ୍ୟ ଏତାଦୃଶ ପତ୍ରଟିଏ ପଠାଇଥିଲେ। ପାର୍ଥକ୍ୟ ଦୁର୍ଲକ୍ଷ୍ୟ ମାତ୍ର। କେବଳ ସମୟର ଯାହା ପାର୍ଥକ୍ୟ ଥିଲା, ହେଲେ ପରିଣତି ସେହି ଦୁର୍ଭିକ୍ଷ ହିଁ ଦୁର୍ଭିକ୍ଷ। ପରେ ଅବଶ୍ୟ କଳାହାଣ୍ଡିକୁ ଚାଉଳ ଆମଦାନୀ କରାଗଲା। ହେଲେ ସେତେବେଳକୁ ନେଡ଼ି ଗୁଡ଼ କହୁଣୀକୁ ବୋହି ସାରିଥିଲା।

ଏହି ମରୁଡ଼ି ସମସ୍ୟା କଳାହାଣ୍ଡିରେ ଲାଗିରହିଥିବା ବେଳେ ଥରେ ତାଙ୍କର ଗୁରୁ ପ୍ରଫେସର ସର୍ବେଶ୍ୱର ଦାସ ରମା ଦେବୀଙ୍କ ନିର୍ଦ୍ଦେଶରେ କିଛି ସ୍ୱେଚ୍ଛାସେବୀଙ୍କ ସହ ରିଲିଫ୍ କାର୍ଯ୍ୟରେ ସେଠାରେ ପହଞ୍ଚିଥିଲେ। ସେତେବେଳକୁ ରମାଦେବୀ କଳାହାଣ୍ଡି ସହିତ ବଲାଙ୍ଗୀର ଅଞ୍ଚଳ ବୁଲି ଖବର ସଂଗ୍ରହ କରିଥିଲେ ଯେ ସେଠାରେ କେତେକ ଲୋକ ଅନାହାରରେ ପ୍ରାଣ ହରାଇଲେଣିବୋଲି ଓ ସେହି ତଥ୍ୟକୁ ମଧ୍ୟ ସେ ତାଙ୍କ ବିବୃତ୍ତିରେ ପ୍ରକାଶ କରି ସାରିଥାନ୍ତି, ଯାହାକି ସରକାରଙ୍କୁ ଏକ ଅଡୁଆ ପରିସ୍ଥିତିରେ ପକାଇ ସାରିଥାଏ। ତଥାପି ସାର୍‌ଙ୍କ ଅନୁରୋଧ କ୍ରମେ ସେ ରିଲିଫ୍

ଫଣ୍ଡରୁ ତାଙ୍କ ସହିତ ଯାଇଥିବା ବିରାଜ ରାୟଙ୍କୁ କୋଡ଼ିଏ ହଜାର ଟଙ୍କା ସହାୟତା ପ୍ରଦାନ କରିଥିଲେ। କିନ୍ତୁ ତାଙ୍କର ସାର୍ ସେତେବେଳେ ଯେଉଁ ଯେଉଁ ସ୍ଥାନ ବୁଲି ଦରିଦ୍ରତାର ସୂଚନାକୁ ନିଜର ଟିପାଖାତାରେ ଲିପିବଦ୍ଧ କରିଥିଲେ ଏବଂ ନିଜର ସେହି ଟିପା ଖାତାଟିକୁ ଛାତ୍ର ଜଗନ୍ନାଥଙ୍କୁ ଦେଇ ସେହି ତଥ୍ୟ ଉପରେ ଭରସା ରଖିବାକୁ ପରାମର୍ଶ ଦେବା ସହିତ ସେହିସବୁ ଅଞ୍ଚଳକୁ ନିଜେ ଯାଇ ଦେଖିବାକୁ ମଧ୍ୟ ଅନୁରୋଧ କରିଥିଲେ।

କଳାହାଣ୍ଡିର ବାସ୍ତବ ସ୍ଥିତି ସଂପର୍କରେ ଜାଣିବାପାଇଁ ସେତେବେଳେ ଜଗନ୍ନାଥ ପ୍ରସାଦଙ୍କୁ  ନିଜର ଅଧସ୍ତନ କର୍ମଚାରୀଙ୍କ ରିପୋର୍ଟ ଉପରେ ନିର୍ଭର କରିବାକୁ ପଡୁଥିଲା। ଟେଲିଫୋନ ପ୍ରାୟ ସେତେବେଳେ କାମ କରୁନଥିଲା। ତେଣୁ ଅନେକ କ୍ଷେତ୍ରରେ ଗ୍ରାମ ସେବକ ଓ ମୁଖ୍ୟ ଡାକ୍ତରଙ୍କ ବ୍ୟକ୍ତିଗତ ମତାମତ ଉପରେ ନିର୍ଭର କରିବାକୁ ପଡୁଥିଲା। ସେମାନଙ୍କ ରିପୋର୍ଟକୁ ଆଧାର କରି କଲେକ୍ଟରଙ୍କୁ ଯାହା କାମ କରିବାକୁ ପଡୁଥିଲା। ଏଥର କିନ୍ତୁ ଜଗନ୍ନାଥ ପ୍ରସାଦ ନିଜର ଗୁରୁଙ୍କ ବ୍ୟକ୍ତିଗତ ମତାମତ ଉପରେ ଭରସା ରଖିବାକୁ ପଡ଼ିଲା।

ଜଗନ୍ନାଥ ପ୍ରସାଦଙ୍କର ନିଜ ସାରଙ୍କ ଉପରେ ଯଥେଷ୍ଟ ଭରସା ଥିଲେ ବି ସରକାରୀ କାର୍ଯ୍ୟର ବନ୍ଧନ ମଧ୍ୟରେ ରହି ସେ ନିଜେ ପ୍ରତ୍ୟକ୍ଷ ଭାବରେ ସେହି ସବୁ ଅଞ୍ଚଳ ଦେଖିବାକୁ ଚାହିଁଲେ। ପ୍ରାୟ ଅଠର ଦିନ କାଳ ଗସ୍ତରେ ବୁଲି ବୁଲି ସେହି ସବୁ ଅଞ୍ଚଳ ସେ ନିଜ ସ୍ୱଚକ୍ଷୁରେ ଦେଖି ସେଠାକାର ଲୋକମାନଙ୍କର ଦୁଃଖ ଦୂର କରିବାପାଇଁ ପ୍ରତୁଳ ପ୍ରୟାସ ଜାରି ରଖିଥିଲେ। ଏହାହିଁ ହେଉଛି ଜଗନ୍ନାଥ ପ୍ରସାଦଙ୍କର ପ୍ରଶାସନିକ ସ୍ତରରେ କଳାହାଣ୍ଡି ପାଇଁ ବିପୁଳ ଅବଦାନ। ଆଜି କାଲି ଏଭଳି ଦାୟିତ୍ୱସଂପନ୍ନ ପ୍ରଶାସକ ମିଳିବା ମୁସ୍କିଲ।

ଦୁର୍ଭିକ୍ଷ ସମୟରେ ଜଗନ୍ନାଥ ପ୍ରସାଦଙ୍କ ଅନ୍ୟତମ ବନ୍ଧୁ ତଥା ସାମ୍ବାଦିକ ଶ୍ରୀ ଗୋପାଳ ମିଶ୍ର ମଧ୍ୟ ସମ୍ବାଦ ସଂଗ୍ରହ କରିବାକୁ ଯାଇ ପହଞ୍ଚିଥିଲେ କଳାହାଣ୍ଡିରେ। ସରକାରୀ ଚାକିରିର ବନ୍ଧନ ମଧ୍ୟରେ ରହି ସେ ତାଙ୍କୁ ଯେତିକି ଚିତ୍ର ପ୍ରଦାନ କରିଥିଲେ ତାହା ତାଙ୍କ ପାଇଁ ଯଥେଷ୍ଟ ଥିଲା। ଯଦିଓ ଜଗନ୍ନାଥ ପ୍ରସାଦ ସେତେବେଳେ ବ୍ୟକ୍ତିଗତ ଭାବରେ ନିଜର କୌଣସି ମତାମତ ଉପସ୍ଥାପନ କରି ନଥିଲେ, ତଥାପି କଳାହାଣ୍ଡିର ସାଂପ୍ରତିକ ସ୍ଥିତି ସଂପର୍କରେ ସେହି ସବୁ ଚିତ୍ରରୁ ବେଶ ଆକଳନ କରି ହେଉଥିଲା। ଗୋପାଳ ବାବୁ ସେହି ସମ୍ବାଦକୁ ଅମୃତ ବଜାର ପତ୍ରିକାରେ ପ୍ରକାଶ କରିଥିଲେ,

ଯାହା ଫଳରେ କି ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ସଦାଶିବ ତ୍ରିପାଠୀ ତାଙ୍କୁ ଡାକି କଳାହାଣ୍ଡି ସଂପର୍କରେ ସମ୍ବାଦ ସଂଗ୍ରହ କରିଥିଲେ।

ସେତେବେଳକୁ ଖଡ଼ିଆଳ ଅଞ୍ଚଳରେ ମୃତ୍ୟୁ ଓ ପିଲା ବିକ୍ରିଠାରୁ ଆରମ୍ଭ କରି ଅନେକ ଘଟଣା ଇତିହାସର ବିଷୟବସ୍ତୁ ହୋଇ ସାରିଥାଏ। ପ୍ରତ୍ୟେକ ଦିନ ଖବର କାଗଜର ପୃଷ୍ଠା ଓଲଟାଇଲା ମାତ୍ରେ ହିଁ କଳାହାଣ୍ଡି ଆଖିକୁ ଆସି ଯାଉଥାଏ। ସେହି ସମୟ ଥାଏ କଂଗ୍ରେସର ରାଜତ୍ୱକାଳ। କଳାହାଣ୍ଡି ସଂପର୍କରେ ସଚେତନହୋଇ ତତ୍କାଳୀନ ପ୍ରଧାନ ମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ କଳାହାଣ୍ଡିର ସେହି ଦୁର୍ଗମ ଅଞ୍ଚଳକୁ ହେଲିକପ୍ଟରରେ ଆସି ଯୁବ ହାକିମ ଜଗନ୍ନାଥଙ୍କୁ ଦେଖି ତ ପ୍ରଥମେ ବିଶ୍ୱାସ କରି ପାରିଲେ ନାହିଁ ଯେ ସେ ହେଉଛନ୍ତି କଳାହାଣ୍ଡିର କଲେକ୍ଟର ବୋଲି। ସେହି କାରଣରୁ ତ ସେ ଆର୍‌.ଡି.ସି.ଙ୍କୁ ପ୍ରଶ୍ନ କରିଥିଲେ, "କ'ଣ ଏହି ଯୁବକ କଳାହାଣ୍ଡିର ଜିଲ୍ଲାପାଳ ?" ସେତେବେଳେ ଶ୍ରୀମତୀ ଗାନ୍ଧୀ ନିଜେ ବୁଲି ବୁଲି ଯେତେବେଳେ ମରୁଡ଼ିପ୍ରପୀଡ଼ିତ, ଅନାହାରକ୍ଲିଷ୍ଟ , ଅସ୍ଥି କଂକାଳ ସାର ମଣିଷଙ୍କୁ ନିଜ ସ୍ୱଚକ୍ଷୁରେ ଦେଖିଲେ, ସେତେବେଳେ ସେ ଶୋକରେ ଅଭିଭୂତ ହୋଇ ଉଠିଥିଲେ। କଳାହାଣ୍ଡିକୁ କିପରି ଦୁର୍ଭିକ୍ଷମୁକ୍ତ କରାଯାଇ ପାରିବ, ସେ ଦିଗରେ ବିଶେଷ ପଦକ୍ଷେପ ଗ୍ରହଣ କରିଥିଲେ।

କଳାହାଣ୍ଡିରେ ମରୁଡ଼ି ସମୟରେ ଦେଶ ବିଦେଶରୁ ଅନେକ ପ୍ରକାର ସାହାଯ୍ୟ ଆସି ପହଞ୍ଚୁଥିଲା। ସେସବୁକୁ ଲୋକଙ୍କ ପାଖରେ ପହଞ୍ଚାଇବାପାଇଁ ସେ ଜିଲ୍ଲାପାଳ ହିସାବରେ ସେ ନିଜର ସମସ୍ତ କର୍ମଚାରୀଙ୍କୁ କାର୍ଯ୍ୟରେ ଲଗାଇ ଦେଇଥିଲେ। ଭାରତ ସେବକ ସମାଜ ଓ ଜିଲ୍ଲା ପ୍ରଶାସନଙ୍କ ପକ୍ଷରୁ ଭୋକିଲା ଜନତାଙ୍କୁ ରିଲିଫ୍ ପ୍ରଦାନ ଦିଗରେ କେବଳ ତାଙ୍କର ନିଷ୍ଠାପର ତତ୍ତ୍ୱାବଧାନ ହେତୁ କୌଣସି କ୍ଷେତ୍ରରେ ତିଳେମାତ୍ର ତ୍ରୁଟି ପରିଲକ୍ଷିତ ହୋଇ ନଥିଲା। ଏସବୁ କେବଳ ସମ୍ଭବପର ହୋଇଥିଲା ପ୍ରତ୍ୟୁତ୍ପନ୍ନମତି ତଥା ବିଚକ୍ଷଣ କଲେକ୍ଟର ଜଗନ୍ନାଥ ପ୍ରସାଦଙ୍କର ନିରଳସ ତଥା ନିଷ୍ଠାପର କାର୍ଯ୍ୟ ସଂପନ୍ନତା ହେତୁ। ଅନ୍ୟପକ୍ଷରେ କଳାହାଣ୍ଡିର ଚାଷୀମାନେ କିପରି ଋଣ ପାଇପାରିବେ ସେ ଦିଗରେ ସେ ନିଜେ ବ୍ୟକ୍ତିଗତ ଭାବରେ ବ୍ଲକ୍‌ଗୁଡ଼ିକୁ ଯାଇ ତଦାରଖ କରୁଥିଲେ। ଏହି ସବୁ ଦୃଷ୍ଟିକୋଣରୁ ସମ୍ଭବତଃ କଳାହାଣ୍ଡିର ଜନସାଧାରଣଙ୍କ ହୃଦୟରେ ସେ ଚିରଦିନ ପାଇଁ ଦେବତ୍ୱର ଆସ୍ଥାନରେ ଅଧିଷ୍ଠିତ ହୋଇ ପାରିଥିଲେ। ଏହି ପରିପ୍ରେକ୍ଷୀରେ ତତ୍କାଳୀନ ସାମ୍ବାଦିକ ତଥା ପୂର୍ବତନ ରାଜ୍ୟମନ୍ତ୍ରୀ ଶ୍ରୀଯୁକ୍ତ ରାସବିହାରୀ ବେହେରାଙ୍କ ଉକ୍ତି ଏକାନ୍ତ ସ୍ମରଣୀୟ। କଳାହାଣ୍ଡିର

ସେହି ଦୁର୍ଦ୍ଦିନକୁ ସ୍ମୃତିଚାରଣ କରି ସେ କୁହନ୍ତି, "କଳାହାଣ୍ଡିର ଭୟାବହ ମରୁଡ଼ି ସମୟରେ, ଖେଳପ୍ରିୟ ଜେ.ପି. ଦାସ, ଜଣେ କର୍ତ୍ତବ୍ୟନିଷ୍ଠ ଜିଲ୍ଲାପାଳ ରୂପେ କର୍ମ ହିଁ ଧର୍ମ ମନେକରି ନିଜ କର୍ତ୍ତବ୍ୟକୁ ସୁଚାରୁ ରୂପେ କାର୍ଯ୍ୟକାରୀ କରିଥିବା ଯୋଗୁ କଳାହାଣ୍ଡିର ସାଧାରଣ ଜନତା ତାଙ୍କୁ ଭୁଲି ପାରି ନାହାନ୍ତି। ତେଣୁ ଏଭଳି ଏକ ଦୁର୍ଦ୍ଦିନରେ ବହୁ ଭୋକିଲା ଲୋକଙ୍କ ମୁହଁରେ ଆହାର ଯୋଗାଇବାରେ ତାଙ୍କ କାର୍ଯ୍ୟ ସ୍ମରଣୀୟ। ତାଙ୍କର ଟିକକ ଅବହେଳାରେ ବହୁ ଜନସାଧାରଣ ହନ୍ତସନ୍ତ ହୋଇ ଯାଇଥାନ୍ତେ। ବିପଦକୁ ଦୃଢ଼ତାର ସହିତ ମୁକାବିଲା କରିବା ହେଉଛି ସାହସିକତା। ତାହା ଜେ.ପି. ଦାସଙ୍କ କାର୍ଯ୍ୟ ଦକ୍ଷତାରେ ପ୍ରକାଶ କରିପାରିଛନ୍ତି। ସେଥିପାଇଁ ସେ ଆମ ସମସ୍ତଙ୍କର ନମସ୍ୟ।" ଅନ୍ୟପକ୍ଷରେ ଏ ସଂକ୍ରାନ୍ତରେ ଖଡ଼ିଆଳର ପୂର୍ବତନ ମନ୍ତ୍ରୀ ଓ ତତ୍କାଳୀନ ଏମ.ଏଲ.ଏ. ଶ୍ରୀଯୁକ୍ତ ଅନୁପ ସିଂହଦେଓଙ୍କର ଅଭିମତଟି ଏକାନ୍ତ ସ୍ମରଣଯୋଗ୍ୟ। ସେ ତା: ୧୯.୧୧.୧୯୭୦ରେ ଜଗନ୍ନାଥ ପ୍ରସାଦଙ୍କୁ ଲେଖିଥିବା ଏକ ପତ୍ରରେ ଉଲ୍ଲେଖ କରିଛନ୍ତି ଯେ, "........ ଖଡ଼ିଆଳର ଲୋକେ ତଥାପି ଆପଣଙ୍କୁ ମନେ ରଖିଛନ୍ତି। ୧୯୬୫-୬୬ ଦୁର୍ଭିକ୍ଷ ସମୟରେ ଆପଣଙ୍କ ସଚ୍ଚୋଟ ସେବା ପାଇଁ ସେମାନେ ସବୁବେଳେ ଆପଣଙ୍କୁ ମନେ ରଖିଥିବେ।"

କଳାହାଣ୍ଡିର ଦୁର୍ଭିକ୍ଷର ସମୟ ଅତିକ୍ରାନ୍ତ ହୋଇଗଲା। ଜଗନ୍ନାଥ ପ୍ରସାଦ କଳାହାଣ୍ଡି ତ୍ୟାଗ କରି ଅନ୍ୟତ୍ର ଚାକିରି କ୍ଷେତ୍ରରେ ଯୋଗଦେଲେ। ହେଲେ କଳାହାଣ୍ଡିର ସ୍ମୃତି ତାଙ୍କ ମାନସ ପଟରେ ଏକ ଶକ୍ତ ଛବି ତୋଳି ଧରିଲା, ଯାହାକୁ ସେ କେବଳ ବିସ୍ମରି ପାରିଲେନାହିଁ, ବରଂ ପରବର୍ତ୍ତୀ କାଳରେ ତାଙ୍କ ଲେଖନୀରୁ ଝରି ଆସିଛି 'କଳାହାଣ୍ଡି' ପରି ଏକ ଯୁଗାନ୍ତକାରୀ କବିତା। ସେଦିନ ଏହିପରି ଏକ କରୁଣ ଦୃଶ୍ୟରୁ ବାଲ୍ମିକୀଙ୍କ ହୃଦୟରୁ ସ୍ୱତଃ ନିର୍ଗତ ହୋଇଥିଲା, 'ମା ନିଷାଦ ପ୍ରତିଷ୍ଠାଂ ତ୍ୱମଗମଃ ଶାଶ୍ୱତୀ ସମାଃ / ଯତ୍ କ୍ରୌଞ୍ଚମିଥୁନାତ୍ ଏକମ୍ ଅବଧୀ କାମମୋହତମ୍ ॥' ପରି ଯୁଗାନ୍ତକାରୀ କରୁଣ ପଂକ୍ତି, ଯେଉଁଥିରୁ ହିଁ ସୃଷ୍ଟି ହୋଇଥିଲା ରାମାୟଣ ପରି ମହାନ୍ କାବ୍ୟ। ନିକଟ ଅତୀତରେ ମଧ୍ୟ ସେହିପରି ଏକ କରୁଣ ତଥା ଛାତିଥରା ଘଟଣାରୁ କବି ସଚ୍ଚିଦାନନ୍ଦ ରାଉତରାୟ ଲେଖିଥିଲେ, 'ନୁହେଁ ବଂଧୁ ନୁହେଁ ଏହା ଚିତା, ଏ ଜାତି ତିମିର ତଳେ ଏ ଅଲିଭା ମୁକତି ସଳିତା / ନୁହେଁ ଏହା ଜଳି ଯିବାପାଇଁ / ଏହାର ଜନମ ଏଥି ଜାଳି ପୋଡ଼ି ଦେବାକୁ ଧସାଇ।' ଆଜି ମଧ୍ୟ କଳାହାଣ୍ଡିର ମର୍ମନ୍ତୁଦ ଅନାହାର ଘଟଣାରୁ କବିଙ୍କ ଲେଖନୀରୁ

ଝରି ଆସିଲା 'କଳାହାଣ୍ଡି' ପରି ଏକ ଅତ୍ୟନ୍ତ ସ୍ପର୍ଶକାତର କବିତା। ଏହି ମର୍ମରେ କଳାହାଣ୍ଡି କବିତାର କେତୋଟି ପଂକ୍ତିକୁ ଏଠାରେ ସ୍ମରଣ କରାଯାଇପାରେ। ଯେପରି କବି ଜଗନ୍ନାଥ ପ୍ରସାଦ ଆମମାନଙ୍କ ନିକଟରେ କଳାହାଣ୍ଡିକୁ ପରିଚିତ କରାଇଛନ୍ତି:-

"ମାନଚିତ୍ରକୁ ଏଥର ଅଲଗା ରଖିଦିଅ
ସେଠାକୁ ଯିବାପାଇଁ ଆଉ
ହେଲିକପ୍‌ଟରର ପ୍ରୟୋଜନ ନାହିଁ
ଯେଉଁଠାରେ ଅନାହାର ସେଠାରେ ହିଁ କଳାହାଣ୍ଡି"

କବି ବୁଝାଇଛନ୍ତି ଯେ ଯେଉଁଠି ଖାଦ୍ୟବିନା ମଣିଷର ପଞ୍ଜରା ହାଡ଼ ବାହାରି ପଡ଼ିଥିବ, ଆଖି କୋଟରଗତ ହୋଇଯାଇଥିବ, ଛିଣ୍ଡାକନାରେ ମଧ୍ୟ ଦେହ ଲୁଚୁ ନଥିବ, କଂସା ବାସନ ବନ୍ଧା ପଡ଼ିଥିବ ବା କୁଡ଼ିଆ ଘରର ଛାତ ଉଲୁରି ଯାଇଥିବ; ସେହିଠାରେ ହିଁ ଆମେ କଳାହାଣ୍ଡିକୁ ଉପଲବ୍ଧି କରିପାରିବା। ସେହି କାରଣରୁ ତାଙ୍କ ହୃଦୟରେ ଏକ ବିଶାଳ ପ୍ରଶ୍ନ ଆସି ଉଂକି ମାରିଛି ଯେ,

"ଆମେ କିପରି ଚାଲି ଯାଇପାରିବା
ଏକବିଂଶ ଶତାବ୍ଦୀର ସମୃଦ୍ଧ ନିରାପତ୍ତାକୁ
କଳାହାଣ୍ଡିକୁ ପଛରେ ଛାଡ଼ି ଦେଇ।"

ସତରେ କଣ କଳାହାଣ୍ଡିକୁ ଛାଡ଼ିଦେଇ ଆଗକୁ ଗତି କରିହେବ ? ବୋଧହୁଏ 'ନା'। ସରକାରୀ ଚାକିରିର ବନ୍ଧନରେ ରହି ସେ ସଶରୀରେ କଳାହାଣ୍ଡିରୁ ଅନ୍ୟତ୍ର ବଦଳି ହୋଇ ଯାଇଛନ୍ତି ସତ, ହେଲେ କଳାହାଣ୍ଡିରେ ତାଙ୍କର ହୃଦୟ ରହି ଯାଇଛି। କଳାହାଣ୍ଡିର ମର୍ମନ୍ତୁଦ ଦୃଶ୍ୟ ତାଙ୍କ କମୋଳ ହୃଦୟକୁ ଯେତିକି ବ୍ୟଥିତ କରିଛି, ଅନୁରୂପ ଭାବରେ ତତ୍କାଳୀନ ଅମଲାତନ୍ତ୍ରିକ କାର୍ଯ୍ୟ ତାଙ୍କୁ ଚାକିରି ପ୍ରତି ବିତସ୍ପୃହ କରାଇଛି। ସେ କେବଳ ଏକ ଯନ୍ତ୍ରଣା ଜର୍ଜରିତ ଅନୁଭବ ମଧ୍ୟ ଦେଇ ଜୀବନଯାପନ କରିଛନ୍ତି।

କଳାହାଣ୍ଡିର ଦୁର୍ଭିକ୍ଷ ପୂର୍ବରୁ ଯେଉଁ ଘଟଣାଟି ସେଠାରେ ଘଟିଥିଲା ତାହାର ଉପସ୍ଥାପନା ମଧ୍ୟ ଏଠାରେ ଏକାନ୍ତ ପ୍ରାସଙ୍ଗିକତା ରକ୍ଷା କରେ, ଯଦିଓ କଳାହାଣ୍ଡିର ଦୁର୍ଭିକ୍ଷ ନିକଟରେ ସେହି ଘଟଣା ଥିଲା ଏକାନ୍ତ ଗୌଣ। ସମ୍ଭବତଃ ସେହି କାରଣରୁ ଜଗନ୍ନାଥ ପ୍ରସାଦ ସେ ଘଟଣାକୁ ବିଶେଷ ଭାବରେ ମନେ ରଖିପାରିନାହାନ୍ତି । ପରବର୍ତ୍ତୀ କାଳରେ ସେଠାକାର ମହାବୀର ସାଂସ୍କୃତିକ ଅନୁଷ୍ଠାନ ତା'ର ସୁବର୍ଣ୍ଣ

ଜୟନ୍ତୀ ଅବସରରେ ୨୦୧୪ ମସିହା ନଭେମ୍ବର ୧୪ ତାରିଖରେ ଅତୀତର କଲେକ୍ଟର ଜଗନ୍ନାଥ ପ୍ରସାଦଙ୍କୁ ମନେ ପକାଇ ପ୍ରଧାନ ଅତିଥି ଭାବରେ ନିମନ୍ତ୍ରିତ କରିଛନ୍ତି କାରଣ ସେ ହିଁ ଏହି ଅନୁଷ୍ଠାନର ଆରମ୍ଭ କରିଥିଲେ। ସେହି ସମୟରେ ବନ୍ଧୁମାନଙ୍କ ମେଳରେ ଯେପରି ଅତୀତର ସ୍ମୃତି ରୋମନ୍ଥିତ ହୋଇଛି ଓ ସେତେବେଳେ ଯାହା ତାଙ୍କର ମନେ ପଡ଼ିଛି, ତାହାକୁ ସେ ବିଶୋଧନ କରିବାକୁ ଚାହିଁଛନ୍ତି ଓ ତାହା ପଛରେ ରହିଥିବା ସତ୍ୟକୁ ଆବିଷ୍କାର କରିବାକୁ ଚାହିଁଛନ୍ତି। ଏହି ଘଟଣାକୁ ସେ ନିଜର "ସ୍ମୃତି ବିଭ୍ରମ ସ୍ମୃତି ବିଶୋଧନ ଓ ରାଶୋମନ" ପ୍ରବନ୍ଧରେ ଅତି ପ୍ରାଞ୍ଜଳ ଭାବରେ ବ୍ୟକ୍ତ କରିଛନ୍ତି। ତେବେ ସଂକ୍ଷିପ୍ତରେ ଘଟଣାଟି ହେଉଛି ଏହିପରି: କଟକରେ ସେତେବେଳେ ଗୋଟିଏ ଛୋଟିଆ ଘଟଣାକୁ କେନ୍ଦ୍ରକରି ଛାତ୍ର ଆନ୍ଦୋଳନ ଆରମ୍ଭ ହୋଇ କ୍ରମେ ସାରା ଓଡ଼ିଶାକୁ ତାହା ବିସ୍ତାର କରୁଥିଲା। ଏହି କ୍ରମରେ ମଧ୍ୟ କଳାହାଣ୍ଡିରେ ଛାତ୍ର ଆନ୍ଦୋଳନ ଦେଖା ଦେଇଥିଲା। ୨୯ ଅକ୍ଟୋବର ସକାଳେ ଏହି ବିଦ୍ରୋହ ଜଗନ୍ନାଥ ପ୍ରସାଦ ରହୁଥିବା ବାସଭବନ ଆଡ଼କୁ ମୁହାଁଉ ଥିବାରୁ ସେଠାକାର ମାଜିଷ୍ଟ୍ରେଟ୍ ଓ ଏସ୍.ପି. ଆସି ସେଠାରେ ପହଞ୍ଚି ଯାଇଥିଲେ। ପ୍ରତିନିଧିତ୍ୱ କରୁଥିବା କେତୋଟି ଛାତ୍ରଙ୍କୁ ନେଇ ସେ ନିଜ କଠୋରିରେ କଥାବାର୍ତ୍ତା ଜାରି ରଖିଥିବା ବେଳେ ହଠାତ୍ ବାହାରେ ଗୁଳି ଫୁଟିବାର ଶବ୍ଦ ଶୁଭାଗଲା। ତା'ପରେ ସେମାନେ ସମସ୍ତେ ବାହାରକୁ ଆସି ଦେଖିଲେ ଯେ ପୁଲିସ ସମସ୍ତଙ୍କୁ ଗୋଡ଼ାଉଛି ଓ କ୍ରମେ ସେଠାରୁ ଛାତ୍ରମାନେ ଛତ୍ରଭଙ୍ଗ ଦେଇଥିଲେ। ପରବର୍ତ୍ତୀ କାଳରେ ଏହି ଗୁଳିଚାଳନା ଘଟଣାକୁ ତଦନ୍ତ କରିବାକୁ ସରକାର ଜଷ୍ଟିସ୍ ବର୍ମନଙ୍କ ଅଧକ୍ଷତାରେ ଏକ ଜଣିକିଆ କମିଶନ ବସାଇଥିଲେ। ସେତେବେଳେ ଜଗନ୍ନାଥ ପ୍ରସାଦ ନିଜର ଆଫିଡେଭିଟ ଦାଖଲ କରିଥିଲେ ଯେ ଯଦିଓ ସେ ଗୁଳିଚାଳନାର ନିର୍ଦ୍ଦେଶ ଦେବା ଦାୟିତ୍ୱ ଗ୍ରହଣ କରିଥିଲେ, ତେବେ ସେତେବେଳେ ବାସ୍ତବରେ ଏସ.ପି.ଙ୍କ ସହିତ ବାହାରେ ଥିବା ମାଜିଷ୍ଟ୍ରେଟ ଗୁଳି ଚାଳନାର ଲିଖିତ ଆଦେଶ ପ୍ରଦାନ କରିଥିଲେ। ଏହିପରି ଭାବରେ ୨୯ ଅକ୍ଟୋବର ୧୯୬୪ ଦିନ ସେହି ଗୁଳିଚାଳନା ପରେ ପରେ ଛାତ୍ର ଆନ୍ଦୋଳନର ଅନ୍ତ ଘଟିଥିଲା। ଏହି ଘଟଣାରୁ ଜଣାପଡ଼େ ଯେ ସେ କିପରି ନିଜର ଅଧସ୍ତନ କର୍ମଚାରୀଙ୍କ ସୁରକ୍ଷା ପ୍ରତି ସଦୈବ ସଚେତନ ରହୁଥିଲେ।

କଳାହାଣ୍ଡିରୁ ଭୁବନେଶ୍ୱରକୁ ଫେରିବା ପରେ କଳାହାଣ୍ଡି ତାଙ୍କ ସ୍ମୃତିର ଏକ ଅଂଶ ବିଶେଷ ହୋଇ ରହି ଯାଇଛି। ଜଗନ୍ନାଥ ପ୍ରସାଦ କଳାହାଣ୍ଡିରୁ ଫେରିଛନ୍ତି

୧୯୬୬ରେ ଓ ଫେରିଛନ୍ତି ମଧ୍ୟ ସାହିତ୍ୟ କ୍ଷେତ୍ରକୁ ସବୁଦିନ ପାଇଁ। ଏହି କ୍ରମରେ ସେ ସିଦ୍ଧାନ୍ତ ନେଇଛନ୍ତି ଯେ ସାହିତ୍ୟ କ୍ଷେତ୍ରରେ ପୂର୍ଣ୍ଣମାତ୍ରାରେ ହଜି ଯିବାକୁ ହେଲେ ତାଙ୍କୁ ସର୍ବପ୍ରଥମେ ସରକାରୀ କଳର ବନ୍ଧନରୁ ମୁକ୍ତ ହେବାକୁ ପଡ଼ିବ। ସେହି କାରଣରୁ ସେ ଦିଲ୍ଲୀସ୍ଥିତ ଓଡ଼ିଶା ସରକାରଙ୍କ ରେସିଡେନ୍‌ସିଆଲ କମିଶନର ପଦରୁ ୧୯୮୪ ମସିହା ଜାନୁଆରୀ ମାସ ୧ ତାରିଖରେ ସ୍ୱେଚ୍ଛାକୃତ ଭାବରେ ଅବସର ଗ୍ରହଣ କରି ନେଇଛନ୍ତି।

ସେ ସଂପର୍କରେ ସେ କୁହନ୍ତି : "I did various odd jobs in Orissa and Delhi. After twenty years of service, I took two years off to research a book on Orissan Paintings. When one is in service it does not give one time to think about one self. During the two years of my research I started reflecting on my life - with capital L - and decided to quit. I left that IAS when I was forty seven, and have always felt that, I should have done it a few years earlier."

ଜଗନ୍ନାଥ ପ୍ରସାଦଙ୍କ ସମଗ୍ର ଚାକିରି କାଳ ହେଉଛି ପ୍ରାୟ ୨୫ ବର୍ଷ। ଚାକିରିରୁ ଅବ୍ୟାହତି ତାଙ୍କ ଜୀବନରେ ଆଣିଦେଇଛି ଅଖଣ୍ଡ ସ୍ୱାଧୀନତା। ମୁକ୍ତ ପକ୍ଷୀ ପରି ସେ କଳାକାଶରେ ବିଚରଣ କରି ବୁଲିଛନ୍ତି। ସୃଷ୍ଟି କରିଛନ୍ତି ଚିତ୍ରକଳା ଓ ସଂରଚନା କରିଛନ୍ତି କବିତା, ନାଟକ, ଗଳ୍ପ, ଉପନ୍ୟାସ ଓ ସମାଲୋଚନାତ୍ମକ ପ୍ରବନ୍ଧ ପରି ଅନେକ ସୃଜନଶୀଳ କୃତିସଂଭାର। କଳାହାଣ୍ଡି ଆସି ବିଭିନ୍ନ ରୂପରେ ମୁହଁ ଦେଖାଇଛି ତାଙ୍କର ବିଭିନ୍ନ କୃତିରେ; ବିଭିନ୍ନ ରୂପବିଭାରେ।

# କାନଭାସରେ କିଛି ଦିନ:
# ବିଚିତ୍ରବର୍ଣ୍ଣା ରଂଗ ଓ ତୂଳୀ

ଏମ୍.ଏ ଅଧ୍ୟୟନ କାଳରୁ କଳାହାଣ୍ଡିରୁ ବିଦାୟ ନେବା ପର୍ଯ୍ୟନ୍ତ ଜଗନ୍ନାଥ ପ୍ରସାଦଙ୍କର ସାରସ୍ୱତ ଜଗତ ଏକ ଶୂନ୍ୟସ୍ଥାନ ଅଧିକାର କରିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ। ତାଙ୍କ ସୃଜନ ଯାତ୍ରାରେ କିଛି ଦିନ ପାଇଁ ଏହି ସ୍ଥବିରତା ଦେଖା ଦେଇଥିଲେ ମଧ୍ୟ ତାଙ୍କ ମନନଶୀଳତା ବେଶ୍ କିନ୍ତୁ ସକ୍ରିୟ ରହିଥିଲା ସେହି ସବୁ ଦିଗରେ। ସେହି କାରଣରୁ ତ ତାଙ୍କର ବନ୍ଧୁ ଅନନ୍ତ ମହାପାତ୍ର ସେଦିନର ସ୍ମୃତିକୁ ରୋମନ୍ଥନ କରି କୁହନ୍ତି, "୧୯୬୪ ମସିହାରେ ଗୋଟେ ଖରାବେଳେ, ପ୍ରଥମେ ଜଗନ୍ନାଥ ପ୍ରସାଦଙ୍କୁ ଦେଖିଥିଲି କଲିକତାର ପାର୍କ ଷ୍ଟ୍ରିଟ୍‌ରେ। ...........ଆମେ ସମସ୍ତେ ତାଙ୍କୁ ଶ୍ରଦ୍ଧାରେ ଜେପି ବୋଲି ଡାକୁଥିଲୁ। ................ମତେ ସବୁଠୁ ବେଶୀ ଆଶ୍ଚର୍ଯ୍ୟ ଲାଗିଥିଲା ଯେ, ଓଡ଼ିଶାର କଳାହାଣ୍ଡି ଭଳି ଗୋଟେ ଜାଗାରେ କଲେକ୍ଟର ଥାଇ ବି ବାହାରର ସଦ୍ୟତମ ସାହିତ୍ୟ ଓ ନାଟକାଦିର ଖବର ଜେପି ରଖୁଥିଲେ। ମୁଁ ଆଚମ୍ୱିତ ହୋଇଥିଲି ଯେ ଜେପି କବିତା ଲେଖୁଥିଲେ ଏବଂ ଚିତ୍ର ଆଙ୍କିବାକୁ ବି ଭଲ ପାଉଥିଲେ।" ସେ ଆହ୍ଲାବାଦରେ ଏମ୍.ଏ. ଅଧ୍ୟୟନ କରୁଥିବା ବେଳେ ଚିତ୍ରକଳା ପ୍ରତି ତାଙ୍କର ଆଗ୍ରହ ଜାତ ହୋଇଥିଲା। ଚିତ୍ରକଳା କ୍ଷେତ୍ରରେ ସେତେବେଳେ ତାଙ୍କର ଅନ୍ୟତମ ବନ୍ଧୁ ତଥା ସହପାଠୀ ଥିଲେ ଶରତ ପୂଜାରୀ, ଯିଏ କି ପରବର୍ତ୍ତୀ କାଳରେ ଜଣେ ଅଧ୍ୟାପକ ହୋଇଥିଲେ ମଧ୍ୟ ଓଡ଼ିଆ ଚଳଚ୍ଚିତ୍ର ଜଗତର ଜଣେ ସୁନାମଧନ୍ୟ ତଥା ଅଦ୍ୱିତୀୟ କଳାକାର ଭାବରେ ଓଡ଼ିଶାର ଜନମାନସରେ ପ୍ରତିଷ୍ଠିତ ହୋଇପାରିଥିଲେ। ଚିତ୍ରକଳା କ୍ଲାସ୍‌ରେ ଶରତଙ୍କ ସହିତ ଯୋଗଦେଇ ଏକ ଡିପ୍ଲୋମା କୋର୍ସ ମଧ୍ୟ କରିଥିଲେ। ସେତେବେଳେ ତାଙ୍କର ଚିତ୍ରକଳା ଆବଷ୍ଟ୍ରାକ୍ଟ ପେଣ୍ଟିଙ୍ଗ ଦିଗକୁ ପ୍ରସାରିତ ହେଉଥିଲା। କିନ୍ତୁ ପରବର୍ତ୍ତୀ କାଳରେ

ସରକାରୀ ଚାକିରିରେ ଆବଦ୍ଧ ହୋଇଗଲା ପରେ ସତେ ଯେପରି ଚିତ୍ରକଳା କେବଳ ସେଦିନର ସେହି ଅଭ୍ୟାସ ମଧ୍ୟରେ ସୀମିତ ରହିଯାଇଥିଲା।

କଳାହାଣ୍ଡିରୁ କିନ୍ତୁ ଫେରିବା ପରେ ତାଙ୍କ ମଧ୍ୟରେ ଅଜାଣତରେ ସୁପ୍ତାବସ୍ଥାକୁ ଚାଲି ଯାଇଥିବା ଚିତ୍ରକଳାର ପ୍ରବୃତ୍ତିଟି ଉଦ୍ରେକ ହୋଇ ଉଠିଲା ଓ କ୍ରମେ ସେହି ଚିତ୍ରକଳା ମଧ୍ୟରେ ନିଜକୁ ହଜାଇ ଦେଲେ। ଆମ ଓଡ଼ିଆ ସାହିତ୍ୟର ରୀତିଯୁଗ ସଂପର୍କରେ ଗୋଟିଏ କଥା ପ୍ରାୟ ସମାଲୋଚକମାନେ କହିଥାନ୍ତି ଯେ ଯେତେବେଳେ ନିଜର କ୍ଷମତା ବଳରେ ରାଜ୍ୟାଧିକାର କରିବାର ସମସ୍ତ କ୍ଷମତାକୁ ତତ୍କାଳୀନ ରାଜା-ମହାରାଜାମାନେ ହରାଇ ବସିଥିଲେ, ସେତେବେଳେ ନିଜ ଗ୍ଲାନିକୁ ଭୁଲିବାକୁ ଯେପରି ସେମାନେ କାବ୍ୟ-ସଂଗୀତ ମଧ୍ୟରେ ନିଜକୁ ବୁଡ଼ାଇ ଦେଇଥିଲେ। ଏହି କଥାକୁ ଏହିଠାରେ ମଧ୍ୟ ପ୍ରାସଙ୍ଗିକତା ଦୃଷ୍ଟିରୁ ତୁଳନା କରାଯାଇପାରେ। ଯେତେବେଳେ ନିଜ କ୍ଷମତାକୁ କେହି ବୁଝିବାକୁ ଚେଷ୍ଟା କରୁନାହାନ୍ତି, ବିଗତ ଶହେ ବର୍ଷ ତଳେ ୧୮୬୬ ମସିହାରେ ନ'ଅଙ୍କ ଦୁର୍ଭିକ୍ଷ ବେଳେ ଶାସକୀୟ ମନୋଭାବ ଯାହା ଥିଲା, ଶହେ ବର୍ଷ ପରେ ଅର୍ଥାତ୍ ୧୯୬୫ ବେଳକୁ ମଧ୍ୟ ତାହାର ଅପରିବର୍ତ୍ତିତା ତାଙ୍କୁ ବହୁତ ଆଘାତ ଦେଇଥିଲା ଯେପରି। ଲୋକଙ୍କ ପାଇଁ ସେ ଯେତେଯାହା କଲେବି ସତେ ଯେପରି ତାଙ୍କ ବିବେକ ନିକଟରେ ସେ ଦୋଷୀ ହୋଇ ଉଠୁଥିଲେ। ତେଣୁ କଳାହାଣ୍ଡିରୁ ଫେରି ସେ ହଠାତ୍ ଚିତ୍ରକଳା ମଧ୍ୟରେ ନିଜକୁ ନିମଗ୍ନ କରିଦେଲେ।

ପୂର୍ବରୁ କୁହାଯାଇଛି ଜଗନ୍ନାଥ ପ୍ରସାଦ ଚାକିରୀ କ୍ଷେତ୍ରରେ ଅତ୍ୟନ୍ତ ନିଷ୍ଠାର ସହିତ ନିଜ କର୍ମକୁ ସଂପନ୍ନ କରିବା ସମୟରେ କେବେ ସାରସ୍ୱତ ଜଗତରୁ ସଂପୂର୍ଣ୍ଣ ନିର୍ବାସନ ଗ୍ରହଣ କରି ନଥିଲେ, ବରଂ ସାହିତ୍ୟିକର ମନନ ନେଇ କଳା ଓ ସାହିତ୍ୟ ଜଗତରେ ଘଟୁଥିବା ବିଭିନ୍ନ ପରିବର୍ତ୍ତନ ଓ ଧାରାକୁ ବେଶ୍ ଗଭୀରତାର ସହିତ ନିରୀକ୍ଷଣ କରୁଥିଲେ। ବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧ ବେଳକୁ ପ୍ରାଚ୍ୟ ସଂସ୍କୃତିର କେନ୍ଦ୍ରସ୍ଥଳ ଭାବରେ ବିବେଚିତ ହେଉଥିବା କଲିକତା ମହାନଗରୀ ସହିତ ସେ ଯେତିକି ସଂପର୍କ ରଖି ସାରସ୍ୱତ ଜଗତରେ ଘଟୁଥବା ବିଭିନ୍ନ ପରୀକ୍ଷାନିରୀକ୍ଷାକୁ ନିରୀକ୍ଷଣ କରୁଥିଲେ, ସେହିପରି ଭାବରେ ସେ ଉତ୍କଳର କଳା-ସଂସ୍କୃତି ପ୍ରତି ମଧ୍ୟ ତନ୍ନିଷ୍ଠ ହୋଇ ପଡୁଥିଲେ। ଏହି ସମୟକୁ ତ ଜଗନ୍ନାଥ ପ୍ରସାଦ କଟକସ୍ଥ କଳାବିକାଶ କେନ୍ଦ୍ରର ସଭାପତିତ୍ୱ ଆସନକୁ ଗ୍ରହଣ କରି ସାରିଲେଣି। ଏବେ କିନ୍ତୁ ସେହି ଚେତନାର ପ୍ରୟୋଗପର୍ବର ଅୟମାରମ୍ଭ ହେବାକୁ ଲାଗିଲା।

ଜଗନ୍ନାଥ ପ୍ରସାଦ ରଂଗ ଓ ତୂଳୀ ମଧ୍ୟରେ ନିଜକୁ ସଂସ୍ଥାପିତ କରିବା ବେଳକୁ ଓଡ଼ିଶାର ଚିତ୍ରକଳା ଜଗତରେ ଜଣେ ଜଣେ ମାଇଲଖୁଣ୍ଟ ଭାବରେ ଅବସ୍ଥାପିତ ହୋଇ ସାରିଥିଲେ ଗୋପାଳ କାନୁନଗୋ, ମୁରଲୀଧର ଟାଲି ପ୍ରମୁଖ ବ୍ୟକ୍ତିତ୍ୱଗଣ। ଯତୀନ ଦାସ ଆନ୍ତର୍ଜାତିକ ସ୍ତରକୁ ଉନ୍ନୀତ ହୋଇ ସାରିଥିବା ବେଳେ ପ୍ରଫୁଲ୍ଲ ମହାନ୍ତି ଇଂଲଣ୍ଡରେ ରହି ପାଶ୍ଚାତ୍ୟ ରୁଚିକୁ ଆପଣେଇ ନେଇ ସାରିଲେଣି। ଜଗନ୍ନାଥ ପ୍ରସାଦ ସେହି ରାସ୍ତାରେ ପାଦ ଦେଇଥିଲେ ହୁଏତ ସେହି ବାତାବରଣ ମଧ୍ୟରେ ହଜି ଯାଇଥାନ୍ତେ, ମାତ୍ର ସେ ସେପରି କଲେ ନାହିଁ। କସ୍ତୁରୀ ମୃଗ ପରି ନିଜର ରୁଚି ମଧ୍ୟରେ ନିଜେ ଘୂରି ବୁଲିଲେ ଓ ତୈଳଚିତ୍ରକୁ ନେଇ ବିଭିନ୍ନ ପରୀକ୍ଷା ନିରୀକ୍ଷା କରିବାକୁ ଲାଗିଲେ। ବିଶେଷ ଆନୁଷ୍ଠାନିକ ଶିକ୍ଷା ଓ ତାଲିମ୍ ଗ୍ରହଣ ନ କରି ମଧ୍ୟ ଜଣେ ସୌଖୀନ ଚିତ୍ରଶିଳ୍ପୀ ଭାବରେ ସେ ଆଙ୍କିବାକୁ ଲାଗିଲେ ଆଧୁନିକ ଚିତ୍ର। ତାଙ୍କ ମାନସ ସ୍ତରରେ ରହିଥିଲା ଭାରତୀୟ ପରଂପରାର ଚିତ୍ରକଳା ସାଙ୍ଗକୁ ପିକାସୋ ଆଦିଙ୍କ ପାଶ୍ଚାତ୍ୟ ଚିତ୍ରକଳାର ଏକ ନିଶ୍ଚିତ ମାର୍ଗ। ସବୁକୁ ଯେପରି ସେ ଆତ୍ମସ୍ଥ କରି ନେଇଛନ୍ତି ଓ ପ୍ରୟୋଗ କରିଛନ୍ତି ନିଜର ମନନଧର୍ମୀ ଚିତ୍ରକଳା ମଧ୍ୟରେ। ତାଙ୍କର ଚିତ୍ରକଳା ସଂପର୍କରେ ସୁସମାଲୋଚକ ସୁମନ୍ୟୁ ଶତପଥୀଙ୍କ ମନ୍ତବ୍ୟକୁ ଏଠାରେ ସ୍ମରଣ କରାଯାଇପାରେ। ସେ କୁହନ୍ତି, "ତୈଳକୁ ମାଧ୍ୟମ କରି ସେ ବିଭିନ୍ନ ରଙ୍ଗ ସହିତ ପରୀକ୍ଷା ନିରୀକ୍ଷା ଚଳାଇଥିଲେ ଓ ସେଥିପାଇଁ ଏକ ନିର୍ଦ୍ଦିଷ୍ଟ ମୁହୂର୍ତ୍ତର ପରିଦୃଷ୍ଟ ଭୂଭାଗର ଦୃଶ୍ୟ ଅପେକ୍ଷା କୌଣସି ଜଣେ ମଣିଷ, ଜୀବ ଅଥବା ବସ୍ତୁର ଚିତ୍ର ବା ଆଲେଖ୍ୟ ତୋଳିବାରେ ଅଧିକ ମନୋନିବେଶ କରୁଥିଲେ। କିନ୍ତୁ ଏ ପ୍ରତିକୃତି ଥିଲା ଅସଂପୂର୍ଣ୍ଣ, କାରଣ ସେ ବିଶ୍ୱାସ କରୁଥିଲେ ଯେ ସଂପୂର୍ଣ୍ଣ ଜୀବନ୍ତ ଛବି ଅଙ୍କନ ଏକ ଧାରଣା ମାତ୍ର, ଯାହା ଅଂକିତ ହୋଇପାରେ ନାହିଁ।"

ଜଗନ୍ନାଥ ପ୍ରସାଦଙ୍କର ଚିତ୍ରକଳାର ସଂଖ୍ୟା ଆଦୌ ବେଶୀ ନୁହେଁ; ମାତ୍ର ତାହାର ଗୁଣାତ୍ମକଦିଗ କିନ୍ତୁ ରହିଥିଲା ଦିଗନ୍ତ ବିସ୍ତାରୀ। ତନ୍ମଧ୍ୟରୁ କେତେକ ଉଲ୍ଲେଖନୀୟ ଚିତ୍ରକୃତି ହେଉଛି: Black Girl (କଳାଝିଅ), Form (ରୂପ), Woman in Blue (ନୀଳରମଣୀ), Om (ଓମ୍), Reminiscence (ସ୍ମୃତିଚାରଣ), Perspective (ଆଭିମୁଖ୍ୟ), Ghost City (ମୃତ ସହର) ଓ Runners (ଧାବକ) ପ୍ରଭୃତି (ଏହି ଚିତ୍ରଗୁଡ଼ିକ Words on Canvas ପୁସ୍ତକରେ ସ୍ଥାନିତ ରହିଅଛି)।

ଜଗନ୍ନାଥ ପ୍ରସାଦଙ୍କ ବିଭିନ୍ନ ରୁଚି ମଧ୍ୟରେ ଗୋଟିଏ ବିଶିଷ୍ଟ ରୁଚି ହେଉଛି ଯେ ଯଦି କୃତି ପାଠକ ହେଉ ବା ଦର୍ଶକ ହେଉ, ତାଙ୍କ ପାଖରେ ନ ପହଞ୍ଚିଲା,

ତେବେ ତାହାର ମୂଲ୍ୟ କଣ? ଆଜିର ଦୁନିଆରେ ସ୍ରଷ୍ଟାମାନେ ଯେତେବେଳେ ପୁରସ୍କାର ପଛରେ ଦୌଡୁଛନ୍ତି ବା ରାଜା ରାମମୋହନ ରାୟ ଲାଇବ୍ରେରୀ ସଂସ୍ଥା ପାଇଁ ବହି ଲେଖୁଛନ୍ତି, ସେତେବେଳେ ଜଗନ୍ନାଥ ପ୍ରସାଦ ପାଠକ ଓ ଦର୍ଶକଙ୍କ ପାଇଁ କାମ କରିବାକୁ ବେଶି ଭଲ ପାଆନ୍ତି। ସେହି କାରଣରୁ ହିଁ ସେ ପ୍ରଥମେ ନିଜ ଚିତ୍ରକଳାର ପ୍ରଦର୍ଶନୀ କରିବାକୁ ଶ୍ରେୟ ମଣିଛନ୍ତି ଓ ପହଞ୍ଚିଛନ୍ତି ଯାଇ ସମକାଳୀନ ଅନ୍ୟତମ ପଥିତଯଶା ଚିତ୍ରଶିଳ୍ପୀ ଅସୀମ ବସୁଙ୍କ ନିକଟରେ।

ପ୍ରଥମେ ତ ଶିଳ୍ପୀ ଅସୀମ ବସୁ ନିଜକୁ ବିଶ୍ୱାସ କରି ପାରିଲେ ନାହିଁ ଯେ ଜେପି ସେତେବେଳେ କାହାର ଚିତ୍ର ପ୍ରଦର୍ଶନୀ କରିବା କଥା କହୁଛନ୍ତି। ସେହି କାରଣରୁ ସେ ପୁଣି ଥରେ ଦୋହରାଇଲେ ନିଜର ପ୍ରଶ୍ନକୁ ଯେ କାହାର ଚିତ୍ରପ୍ରଦର୍ଶନୀ ହେବା କଥା ସେ କହୁଛନ୍ତି। ସତ୍ୟକୁ ଜାଣିବା ପରେ ସେ ତ ପୂରାପୂରି ଆଶ୍ଚର୍ଯ୍ୟ ହୋଇଗଲେ। ପ୍ରଶାସନିକ ଅଫିସରମାନେ କବିତା ବା ଗଳ୍ପ ଲେଖନ୍ତି ବୋଲି ସେ ଜାଣିଥିଲେ, ହେଲେ ଜେପି ଯେ ଚିତ୍ରକଳା ଦିଗରେ ପାରଙ୍ଗମ ତାହା ତାଙ୍କୁ କେବଳ ଚକିତ କରିଲା ନାହିଁ; ଅନେକାଂଶରେ ଆନନ୍ଦିତ ମଧ୍ୟ କଲା।

ସେତେବେଳେ ସେମାନଙ୍କର 'ଶିଳ୍ପୀ ସଂସଦ' ମାଧ୍ୟମରେ ଗୋଟିଏ ଚିତ୍ର ପ୍ରଦର୍ଶନୀ ଆୟୋଜନ କରାଯିବାର ସ୍ଥିର କରାଗଲା ଓ ସେହି କ୍ରମରେ ସେ ସେତେବେଳେ ଅନ୍ୟତମ ଶିଳ୍ପୀ ଅସୀତ ମୁଖାର୍ଜୀଙ୍କୁ ସାଥୀରେ ଧରି ଆୟୋଜନ ହେବାକୁ ଥିବା ପ୍ରଦର୍ଶନୀ ପାଇଁ ଜେପିଙ୍କ ଚିତ୍ରକଳାକୁ ବାଛିବାକୁ ଗଲେ। ଚିତ୍ର ବଛା ଗଲା ଓ ପ୍ରଦର୍ଶିତ ହେଲା ମଧ୍ୟ। ଊନବିଂଶ ଶତକର ସତୁରି ଦଶକରେ ଭୁବନେଶ୍ୱର ଭଳି ସ୍ଥାନର ଜଣେ ଚିତ୍ରଶିଳ୍ପୀର ଚିତ୍ର ପ୍ରଦର୍ଶିତ ହେବା ଥିଲା ସେତେବେଳେ ଏକ ବିରଳ ଘଟଣା। ୧୯୭୧ ମସିହା ମାର୍ଚ୍ଚ ମାସ ୭ ତାରିଖରେ ଭୁବନେଶ୍ୱରର ରବୀନ୍ଦ୍ର ମଣ୍ଡପଠାରେ ଏହି ଚିତ୍ର ପ୍ରଦର୍ଶନୀର ଉଦଘାଟନ କରିଥିଲେ ବିହାରର ପୂର୍ବତନ ରାଜ୍ୟପାଳ ଶ୍ରୀ ନିତ୍ୟାନନ୍ଦ କାନୁନଗୋ। ସେତେବେଳେ ଜଗନ୍ନାଥ ପ୍ରସାଦ ଥିଲେ ପୂର୍ତ୍ତ ବିଭାଗର ସେକ୍ରେଟାରୀ। ଏହି ଚିତ୍ର ପ୍ରଦର୍ଶନୀର ସମ୍ବାଦ ଓଡ଼ିଶାର ଅନେକ ପ୍ରତିଷ୍ଠିତ ଖବର କାଗଜର ପୃଷ୍ଠା ମଣ୍ଡନ କରିଥିଲା।

ସାଧାରଣତଃ ଦେଖାଯାଇଥାଏ ଯେ ତଥାକଥିତ ଦୁର୍ବୋଧ୍ୟ ଆଧୁନିକ କବିତା ପରି ଆଧୁନିକ ଚିତ୍ରଗୁଡ଼ିକ ମଧ୍ୟ ଦୁର୍ବୋଧ୍ୟ ହୋଇ ଉଠିଥାନ୍ତି। କିନ୍ତୁ ଏହିଭଳି ପ୍ରଚଳିତ ରୂଢ଼ିକୁ ଯେପରି ଭୁଲ୍ ବୋଲି ପ୍ରମାଣିତ କରିଥିଲେ ଜେପି। ତାଙ୍କର ସେହି ଆଧୁନିକ ଚିତ୍ରଗୁଡ଼କ କିନ୍ତୁ ଆଦୌ ଦୁର୍ବୋଧ୍ୟ ନଥିଲା। ସବୁଠାରୁ ବଡ଼ ଆକର୍ଷଣୀୟ ଥିଲା ଯେ

ତାଙ୍କର କୌଣସି ଚିତ୍ରର ନାମକରଣ କିନ୍ତୁ ନଥିଲା। ଅବଶ୍ୟ କେତେକ ଚିତ୍ର ସଂପର୍କରେ ପରିଚୟର ସମ୍ୟକ୍ ସୂଚନା ପ୍ରଦାନ କରାଯାଇଥିଲା। ଜଗନ୍ନାଥ ପ୍ରସାଦଙ୍କ ଚିତ୍ରକଳା ଉପରେ ଏକ ସାରଗର୍ଭକ ସମୀକ୍ଷା ଉପସ୍ଥାପନ କରିଥିଲେ ପ୍ରଫେସର ଇନାମ୍ ଅନସରୀ, ଯିଏ କି ହାଇଦରାବାଦର କଳା-ଇତିହାସ ବିଭାଗର ପ୍ରଫେସର ଭାବରେ କାର୍ଯ୍ୟ କରିବା ସହିତ ଓଡ଼ିଶାର ବିଦ୍ୱାନ୍‌ମାନଙ୍କ ସହିତ ସଂପର୍କ ରକ୍ଷା କରୁଥିଲେ ଓ ସେହି ମର୍ମରେ ସମସ୍ତେ ତାଙ୍କୁ ମାମା ବୋଲି ସମ୍ବୋଧନ କରୁଥିଲେ। ଜେପିଙ୍କ ଚିତ୍ରକଳା ଉପରେ ମନ୍ତବ୍ୟ ଦେବାକୁ ଯାଇ ସେ ଲେଖିଛନ୍ତି, "He debbles in oils only, which he has adopted as the medium of his artistic expression. He has a wide range of artistic activities, and wields both brush and knife with equal facility. His protraits and compositions are striking, but he has little to do with land-scapes, mostly adhering to postures and expressions. His colour scheme as a whole is pleasing and harmonious. Sometime he indulges in distortions as well. His free experimentations take him to the borderline of modernism or abstract expression al-most unawares even digressing into cubism as well. .............he has a regular studio stacked with finished and unfinished can-vases of different sizes to which he turns for diversion for cre-ative art activities."

ପରବର୍ତ୍ତୀ କାଳରେ ଆୟୋଜିତ ହୋଇଥିବା ଗୋଷ୍ଠୀ ପ୍ରଦର୍ଶନୀରେ ମଧ୍ୟ ତାଙ୍କର ଚିତ୍ର ସ୍ଥାନ ପାଇଥିଲା। ଯେପରି ୧୯୭୩ ମସିହା ଜାନୁଆରୀ ମାସ ୧୨ ତାରିଖରେ Workng Artist Association, Orissa ତରଫରୁ ଭୁବନେଶ୍ୱର ସ୍ଥିତ ଚିଲଡ୍ରେନ ପାର୍କଠାରେ ଆୟୋଜିତ ହୋଇଥିବା 'Paintings 73' ଯାହାକୁ ଉଦ୍‌ଘାଟନ କରିଥିଲେ ଶ୍ରୀମତୀ ନନ୍ଦିନୀ ଶତପଥୀ। ଅବଶ୍ୟ ଏହାପରେ ସେ ଆଉ ଚିତ୍ର ପ୍ରତି କେବେ ଆଗ୍ରହ ପ୍ରକାଶ କରିନାହାନ୍ତି। ତାଙ୍କର ସୃଜନଶୀଳତା କ୍ରମେ ଚିତ୍ରକଳାରୁ କବିତା ଓ ଗଳ୍ପ ଦିଗକୁ ସଂପ୍ରସାରିତ ହୋଇ ଯାଇଛି।

ଜଗନ୍ନାଥ ପ୍ରସାଦ ନିଜେ କେବେ ନିଜର ଚିତ୍ର ସଂପର୍କରେ ମତବ୍ୟକ୍ତ କରିନାହାନ୍ତି କି ସେ ସଂପର୍କରେ ବିଶେଷ ଆଲୋଚନା କରିବା ଦିଗରେ ତାଙ୍କର କୌଣସି ସ୍ପୃହା ନାହିଁ। ପ୍ରଫେସର ଗଣେଶ୍ୱର ମିଶ୍ରଙ୍କ ଉକ୍ତିକୁ ଏହି କ୍ଷେତ୍ରରେ ଉଲ୍ଲେଖ କରାଯାଇପାରେ। ତାଙ୍କରି ଭାଷାରେ କହିବାକୁ ଗଲେ, "ଆଉ ତ ଚିତ୍ର ଆଙ୍କୁ

ନାହିଁ, ସେ ବିଷୟରେ ଆଲୋଚନା କାହିଁକି ?- ଏପରି ଭାବନାଟିଏ ହୁଏତ ତାଙ୍କୁ ଆବୋରି ରଖିଛି।" ତେବେ ସମାବେଶ ପାଇଁ ଦେଇଥିବା ସାକ୍ଷାତକାରରୁ ଚିତ୍ରକଳା ସଂପର୍କରେ ଦେଇଥିବା ଏକ ମୂଲ୍ୟବାନ ତଥ୍ୟକୁ ଏହି ମର୍ମରେ ମାତ୍ର ଉଲ୍ଲେଖ କରାଯାଇପାରେ। ସେ ସେଠାରେ କହି ରଖିଥିଲେ, " ........... ପ୍ରତ୍ୟେକ କଳାର ଏକ ନିର୍ଦ୍ଦିଷ୍ଟ ପରିପ୍ରକାଶର ଭଙ୍ଗୀ ଅଛି। ଚିତ୍ରାଙ୍କନପାଇଁ କାନଭାସ ଓ ରଙ୍ଗ ଯାହା, କବିତା ପାଇଁ ଶବ୍ଦ ଠିକ୍ ତାହା। ରଙ୍ଗବିନ୍ୟାସ ଯଦି ଚିତ୍ରକଳାର ସଂଜ୍ଞା ହୁଏ, ଶବ୍ଦର ବିନ୍ୟାସ କବିତାର ସଂଜ୍ଞା ହେବ। ଉଭୟରେ ଶୈଳୀର ଆଶ୍ରୟ ନେବାକୁ ହୋଇଥାଏ। କାଳାତ୍ମକ ମୂଲ୍ୟବୋଧ ଦୃଷ୍ଟିରୁ ଏ ଦୁଇଟି ମଧ୍ୟରୁ କୌଣସି ଗୋଟିକକୁ ଅଧିକ ସ୍ୱଷ୍ଟ ବୋଲି କହିବା ସମ୍ଭବ ନୁହେଁ। ଯଦି ସ୍ୱଷ୍ଟତାର ଅଭାବ ଲକ୍ଷିତ ହୁଏ, ତା' କବି ବା ଚିତ୍ରଶିଳ୍ପୀର ଦୁର୍ବଳତା ବୋଲି ଧରିନେବାକୁ ହେବ।"

ଶିଳ୍ପୀ ଜଗନ୍ନାଥ ପ୍ରସାଦଙ୍କ ଚିତ୍ର ଅତ୍ୟନ୍ତ ସୀମିତ, ତେବେ ସେହି ସ୍ୱଳ୍ପ ସଂଖ୍ୟକ ଚିତ୍ର ମଧ୍ୟରୁ କାଳୀଝିଅ (Black Girl) ଚିତ୍ରଟି ଅତ୍ୟନ୍ତ ଉଚ୍ଚକୋଟୀର ଓ ସମସ୍ତଙ୍କର ମନଲୋଭା। ଥରେ ତ ବିଶିଷ୍ଟ ଚଳଚ୍ଚିତ୍ର ନିର୍ଦ୍ଦେଶକ ମୃଣାଳ ସେନ ସେହି ଚିତ୍ରଟିକୁ ଦେଖି କହିଥିଲେ, "What a surprise ! The Dark Girl is yours, I am sure I love "it"." ଜେପିଙ୍କ ଚିତ୍ରକୁ ନେଇ ଏକ ଅପ୍ରୀତିକର ଘଟଣାଟିଏ ରହିଛି, ଯଦିଓ ଜେପି ଏ ସଂପର୍କରେ କେବେ କିଛି କେଉଁଠି କହି ନାହାନ୍ତି। ତେବେ ତାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ଗୋପାଳ ମିଶ୍ର ସେହି ଘଟଣାଟିକୁ ଅତ୍ୟନ୍ତ ଦୁଃଖର ସହିତ ବ୍ୟକ୍ତ କରିବାକୁ କୁଣ୍ଠା ପ୍ରକାଶ କରିନାହାନ୍ତି। ସେ ଭୁବନେଶ୍ୱର କ୍ଲବ ବୁଲେଟିନ୍‌ର ଫେବୃୟାରୀ-ମାର୍ଚ୍ଚ, ୧୯୮୯ ସଂଖ୍ୟାରେ ଲେଖିଛନ୍ତି ଯେ, "ମୋର ସ୍ୱଷ୍ଟ ମନେ ଅଛି, ଭୁବନେଶ୍ୱର କ୍ଲବରେ ଜଗନ୍ନାଥ ପ୍ରସାଦଙ୍କର ଚିତ୍ରଟିଏ ଟଙ୍ଗା ହୋଇଥିଲା। ପରେ ଚିତ୍ରଟି କୁଆଡ଼େ ଗଲା ମୋତେ ଜଣାନାହିଁ। ଶୁଣିଲି, କ୍ଲବର କେତେକ ପୁରୁଣା ଜିନିଷ ସହିତ ଚିତ୍ରଟି ନିଲାମ କରି ଦିଆଗଲା। କଥାଟା ମୋତେ ଖୁବ୍ ବାଧିଲା। ଜଗନ୍ନାଥ ପ୍ରସାଦ ମୂଳରୁ କ୍ଲବ ସହିତ ସଂପୃକ୍ତ ଥିଲେ; କ୍ଲବର ସାଂଗଠନିକ କାର୍ଯ୍ୟରେ ବିଶେଷ ସାହାଯ୍ୟ କରିଥିଲେ। କ୍ଲବକୁ ସେ ଦାନ କରିଥିଲେ ତାଙ୍କର ଗୋଟିଏ ଚିତ୍ର। ଆମେ ଯେଉଁମାନେ କ୍ଲବ ସହିତ ସଂପୃକ୍ତ, ଚିତ୍ରଟି ସଂରକ୍ଷିତ ରଖିବା ଆମର ଦାୟିତ୍ୱ ଥିଲା।"ଏହାକୁ ଦୁର୍ଭାଗ୍ୟ ବୋଲି କୁହାଯିବ ନାହିଁ ତ ଆଉ କଣ କୁହାଯିବ ?

# କବିତା 'ପ୍ରଥମ ପୁରୁଷ' ଓ କବିତାସାମ୍ରାଜ୍ୟର ବିସ୍ତୀର୍ଣ୍ଣ ଇଲାକା

ଜଗନ୍ନାଥ ପ୍ରସାଦ ହେଉଛନ୍ତି ଜଣେ ଅନ୍ତର୍ମୁଖୀ ବ୍ୟକ୍ତିତ୍ୱର ମଣିଷ। ସେହି କାରଣରୁ ସେ ଅନେକ ବେଦନାକୁ ନିଜ ମଧ୍ୟରେ ଭୋଗନ୍ତି। ତେବେ ପ୍ରଶାସନିକ ସ୍ତରରେ ରହି ସେ ଯେତିକି ଅସଜଡ଼ା କାମକୁ ସଜାଡ଼ିବାକୁ ଚେଷ୍ଟା କରିଛନ୍ତି ତାହାକୁ ସେ ପ୍ରଥମେ ନିଜ କୃତି ମଧ୍ୟରେ କରିଛନ୍ତି ଓ ତାହାରି ମଧ୍ୟରେ ସମାଜକୁ କିଛି କହିବାକୁ ଚାହିଛନ୍ତି। ଅନ୍ୟପକ୍ଷରେ କହିବାକୁ ଗଲେ ତାହାରି ମାଧ୍ୟମରେ ସେ ସମାଜକୁ କିଛି ଶିଖିବାକୁ ଯେପରି ନିର୍ଦ୍ଦେଶ ଦେଇଛନ୍ତି। ପ୍ରଥିତଯଶା କବି ସଚ୍ଚି ରାଉତରାୟ ଲେଖିଥିଲେ, "ଏହି ସ୍ଥିତିକୁ ବଦଳାଇ ଦେବା ନୂଆ ରୂପ"। ସେହିପରି ଜଗନ୍ନାଥ ପ୍ରସାଦ ସମକାଳୀନ ସ୍ଥିତିକୁ ବଦଳାଇ ଦେଇ ତାକୁ ନୂତନ ରୂପରେ ରୂପାୟିତ କରିବାକୁ ଚେଷ୍ଟା କରନ୍ତି, ହେଲେ ମୁହଁଖୋଲି କିଛି କୁହନ୍ତି ନାହିଁ। ସେହି କାରଣରୁ ସମ୍ଭବତଃ ତାଙ୍କର କୌଣସି ସାରସ୍ୱତ କୃତିର ମୁଖବନ୍ଧ କି ପୃଷ୍ଠବନ୍ଧ ନାହିଁ। କବିତା କି ଗଳ୍ପ-ଉପନ୍ୟାସ ସଂପର୍କରେ ପଚାରିଲେ, ସେ ସଂକ୍ରାନ୍ତରେ ସେ କେବେ ମୁହଁଖୋଲିବାକୁ ଇଚ୍ଛା ପ୍ରକାଶ କରନ୍ତିନାହିଁ। ବରଂ ଅତ୍ୟନ୍ତ ନିର୍ଭୀକ ଭାବରେ କୁହନ୍ତି ତାଙ୍କ ସୃଷ୍ଟିରୁ ପାଠକ ଯେତିକି ବୁଝିଲା, ତାହାହିଁ କେବଳ ତାଙ୍କର ବକ୍ତବ୍ୟ, ତାହାର ଊର୍ଦ୍ଧ୍ୱରେ କିଛି ନାହିଁ। ତେଣୁ କଳାହାଣ୍ଡି କଥା ଉଠିଲେ ସେ କଳାହାଣ୍ଡିକୁ ବୁଝାନ୍ତି ଏହିପରି ଯେ, "ମାନଚିତ୍ରକୁ ଏଥର ଅଲଗା କରିଦିଅ / ସେଠାକୁ ଯିବାପାଇଁ ଆଉ / ହେଲିକପ୍ଟରର ପ୍ରୟୋଜନ ନାହିଁ / ଯେଉଁଠାରେ ଅନାହାର ସେଠାରେ ହିଁ କଳାହାଣ୍ଡି" । ତେଣୁ କଳାହାଣ୍ଡିର ସମସ୍ୟାକୁ ଦୂର କରିବାପାଇଁ କଳାହାଣ୍ଡିକୁ ଯିବା ଦରକାର ନାହିଁ; ଯେଉଁଠି ଅନାହାର ଦେଖୁଛ, ସେଇଠିକାର ସମସ୍ୟାକୁ ଦୂର କରି

ପାରିଲେ ତାହା ହିଁ ଯଥେଷ୍ଟ ହେବ ନିଶ୍ଚୟ। ପୁଣି ଯଦି କେବେ ଗୁଜୁରାତ ସଂପର୍କରେ କେବେ କବିଙ୍କୁ କିଛି ପଚରାଯାଏ, ତେବେ ସେ କହିବେ, "ଗୁଜୁରାତ ପରେ କବିତା ଲେଖାଯିବ / ସେଇ ଗୁଜୁରାତ ବିଷୟରେ" ଏବଂ ଅତି ବିସ୍ତୀର୍ଣ୍ଣ ଭାବରେ ସେ ପୁଣି କହିବେ, "ସେ କବିତା ଆରମ୍ଭ ହେବ ଅଯୋଧ୍ୟାର କଳଂକିତ ଅଧ୍ୟାୟରୁ / ଏବଂ ଯାଇ ପହଞ୍ଚିବ / ଗୋଧ୍ରା ଗୁଜୁରାତ ଦେଇ ମୁମ୍ବାଇରେ"। ସେ କବିତାରେ କେବଳ ସ୍ଥିତିଟିକୁ ପରିବେଷଣ କରନ୍ତି, ସମାଧାନ ପାଇଁ ପାଠକ ବା ଜନସାଧାରଣଙ୍କ ଉପରେ ସବୁକିଛି ଛାଡ଼ି ଦିଅନ୍ତି।

ଜଗନ୍ନାଥ ପ୍ରସାଦ କଳାହାଣ୍ଡିରୁ ଫେରିଛନ୍ତି ୧୯୬୬ରେ। ତାଙ୍କ ଭିତରେ ଯେଉଁ ଜ୍ୱଳନ ସେ ଅନୁଭବ କରୁଥିଲେ ସତେ ଯେପରି ସେ ତାହାକୁ ଭୁଲିବାକୁ ଚେଷ୍ଟା କରିଛନ୍ତି ରଂଗ ଓ ତୁଳୀର ସାହାଯ୍ୟ ନେଇ। ମାତ୍ର ଆଉ ବେଶୀ ସମୟ ପର୍ଯ୍ୟନ୍ତ ସେ ସେଥିରେ ନିଜର ମାନସିକତାକୁ ବାନ୍ଧି ରଖି ପାରିନାହାନ୍ତି। ଫେରିଛନ୍ତି କବିତା ରାଜ୍ୟକୁ ଓ ନାଟକର ମାହୋଲ ମଧ୍ୟକୁ। ଏଠି ନିଜର ଅନୁଭବକୁ ରୂପ ଦେବାପାଇଁ ଯଥେଷ୍ଟ କାନଭାସ ରହିଛି। ରଂଗ, ତୁଳୀ ଓ କାନଭାସର ସ୍ଥାନକୁ ଅଧିକାର କରିଛି କଲମ ଓ କାଗଜ। କାଗଜର ପୃଷ୍ଠାରୁ ଚରିତ୍ରମାନେ ମଧ୍ୟ ଜୀବନ୍ତ ହୋଇ ଡେଇଁ ପଡ଼ିଛନ୍ତି ରଂଗଶାଳାକୁ ଓ ମୁହଁରେ ରଂଗମାଖି ଠିଆ ହୋଇ ଯାଇଛନ୍ତି ରଂଗମଞ୍ଚ ଉପରେ।

ଜଗନ୍ନାଥ ପ୍ରସାଦ ତ ସ୍କୁଲ ବେଳୁ କବିତାରେ ମନୋନିବେଶ କରିଥିଲେ, ତେବେ ବୟସ ବଢ଼ିବା ସଂଗେ ସଂଗେ ସେ ଅନୁଭବ କଲେ ଯେ ପିଲାଦିନର କବିତା ସେହି ପିଲାଳିଆମିରେ ରହିଥାଉ। ଏଣିକି କବିତା ସମକାଳୀନ ଯେତେବେଳେ ହେଉଛି ତେଣୁ ସେହିଥିରୁ ହିଁ ନିଜର ପରିଚୟ ଆବିଷ୍କାର କରିବାକୁ ପଡ଼ିବ। ଏହି କ୍ରମରେ ତାଙ୍କର ପ୍ରଥମ କବିତା ସଂକଳନ ହେଉଛି 'ପ୍ରଥମ ପୁରୁଷ'। ରଚନା କାଳ (ପ୍ରକାରାନ୍ତରେ ହୋଇ ପାରିବ ପ୍ରକାଶ କାଳ) ହେଉଛି ୧୯୭୧ ମସିହା। ଏହି 'ପ୍ରଥମ ପୁରୁଷ'ର ପ୍ରକାଶନ ଅନ୍ତରାଳରେ ରହିଥିବା ପୃଷ୍ଠଭୂମିଟି ମଧ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ। ଦିନେ ଏକ କବିତା ସନ୍ଧ୍ୟାରେ ଜେପିଙ୍କ ବନ୍ଧୁ ତଥା ଅଭିନେତା ଅନନ୍ତ ମହାପାତ୍ର ତାଙ୍କୁ ପରାମର୍ଶ ଦେଲେ ଯେ ତାଙ୍କର ବର୍ତ୍ତମାନ ଏକ କବିତା ସଂକଳନ ପ୍ରକାଶ ହେବାର ସମୟ ଆସି ଉପଗତ ହୋଇସାରିଛି। ଅନନ୍ତ ମହାପାତ୍ର ନିଜେ ପ୍ରକାଶକ ହେବେ ବୋଲି ସ୍ୱତଃ ପ୍ରବୃତ୍ତ ଭାବରେ ଇଚ୍ଛା ପ୍ରକାଶ କଲେ। କିନ୍ତୁ କବିତା ସଂକଳନର ପ୍ରଚ୍ଛଦ ଚିତ୍ର ଆଂକିବାପାଇଁ ଉଭୟଙ୍କ ମନକୁ ଆସିଲାଯେ

ବଂଗଳା ଚଳଚ୍ଚିତ୍ରର ପ୍ରସିଦ୍ଧ ନିର୍ଦ୍ଦେଶକ ସତ୍ୟଜିତ ରାୟଙ୍କୁ ସେ ଦାୟିତ୍ୱ ଦେବାପାଇଁ। ତାଙ୍କୁ ପୁଣି କିଏ ରାଜି କରାଇବ ? ଅନନ୍ତ ମହାପାତ୍ର ସତ୍ୟଜିତ ରାୟଙ୍କର ଜଣେ ବଂଧୁ କିରଣ ରାହାଙ୍କୁ ଜାଣି ଥିବା ବେଳେ ଜେପି ଜାଣିଥିଲେ ତାଙ୍କର ଜଣେ ସଂପର୍କୀୟା ମିନୁ ମୁଖାର୍ଜୀଙ୍କୁ। ଉଭୟଙ୍କ ମାଧ୍ୟମରେ ସତ୍ୟଜିତ ରାୟଙ୍କୁ ଅନୁରୋଧ କରାଗଲା ଓ ପରିଶେଷରେ ସେ ମଧ୍ୟ ପ୍ରଚ୍ଛଦ ଚିତ୍ର ଆଂକିବାକୁ ନିଜର ସମ୍ମତି ପ୍ରକାଶ କଲେ। କିନ୍ତୁ ତାଙ୍କର ଏ ଦିଗରେ ଦୁଇଗୋଟି ସର୍ତ୍ତ ରହିଲା। ପ୍ରଥମ ସର୍ତ୍ତଟି ରହିଲା ଯେ ସେ ପ୍ରଥମେ କବିତାଗୁଡ଼ିକର ବଂଗଳା ଓ ଇଂରାଜୀ ଅନୁବାଦକୁ ପଢ଼ିଲା ପରେ ଚିତ୍ର ଆଂକିବେ ଏବଂ ଦ୍ୱିତୀୟ ସର୍ତ୍ତଟି ହେଲା ଯେ ବହିର ପ୍ରଚ୍ଛଦ କଲିକତାର ରେଡିଆଣ୍ଟ ପ୍ରେସରେ ହିଁ ଛପା ହେବ। ଶେଷରେ ସେହି ସର୍ତ୍ତାନୁସାରେ କାର୍ଯ୍ୟ ହେଲା ଓ ପ୍ରଥମପୁରୁଷର କଭର ସେହି ରେଡିଆଣ୍ଟ ପ୍ରେସରେ ଛପା ହେଲା।

କେବଳ ସେତିକି ନୁହେଁ। ଜେପି ଚାହୁଁଥିଲେ ପୁସ୍ତକଟି ନିର୍ଭୁଲ ହେଉ ଓ ତାହାର ଛପା ଉନ୍ନତ ମାନର ହେଉ ବୋଲି। ସେହି କାରଣରୁ ସେତେବେଳେ ଇଂଲଣ୍ଡରୁ ନୂଆ ଆସିଥିବା ମନୋଟାଇପ୍ ମେସିନ୍‌ରେ କବିତା କଂପୋଜ ହେଲା ଓ ଜର୍ମାନ ମେସିନରେ ଛପା କାର୍ଯ୍ୟ ସଂପନ୍ନ କରାଗଲା। ପୁଣି ପୁସ୍ତକର ବନ୍ଧେଇ ପାଇଁ ମଧ୍ୟ  କଲିକତାରୁ ଦକ୍ଷ ବାଇଣ୍ଡରଙ୍କୁ ଅଣା ଯାଇଥିଲା। କହିବାକୁ ଗଲେ ସବୁଦୃଷ୍ଟିରୁ ଜଗନ୍ନାଥ ପ୍ରସାଦଙ୍କର ଏହି କବିତା ସଂକଳନଟି ବେଶ ଆକର୍ଷଣୀୟ । ଇଏତ ହେଲା କବିତା ସଂକଳନର ବାହ୍ୟ ସ୍ତରର କଥା, କବିତା ସଂକଳନର ଅନ୍ତଃସ୍ତରଟି ମଧ୍ୟ ଅନୁରୂପ ଭାବରେ ଥିଲା ଅତ୍ୟନ୍ତ ଅପୂର୍ବ। ଅନ୍ତଃସ୍ତରଟି ହେଉଛି ସଂପୂର୍ଣ୍ଣ ଭାବରେ କବିତାର ଅନ୍ତଃସ୍ୱରର କଥା, ଯାହାକୁ ନିମ୍ନ କ୍ରମରେ ବର୍ଣ୍ଣନା କରାଯାଇପାରେ।

ଗତ ଶତାବ୍ଦୀର ଷାଠିଏ-ସତୁରି ଦଶକ ବେଳକୁ କବି ସଚ୍ଚିଦାନନ୍ଦ ରାଉତରାୟ ଓଡ଼ିଆ କବିତା କ୍ଷେତ୍ରରେ ଜଣେ ପ୍ରବାଦ ପୁରୁଷ ଭାବରେ ଆତ୍ମ ପ୍ରତିଷ୍ଠା ଲାଭ କରିସାରିଥାନ୍ତି। ଏବଂ ତାଙ୍କର ଉତ୍ତରସୂରୀ ଭାବରେ କବି ରମାକାନ୍ତ ରଥଙ୍କଠାରୁ ଆରମ୍ଭ କରି କବି ସୀତାକାନ୍ତ ମହାପାତ୍ରଙ୍କ ପର୍ଯ୍ୟନ୍ତ ସମସ୍ତେ ତାଙ୍କ ପ୍ରତିଷ୍ଠିତ ମାର୍ଗରେ ଗତି କରି ମଧ୍ୟ ଓଡ଼ିଆ କବିତା କ୍ଷେତ୍ରରେ ନିଜ ନିଜର ସ୍ଥିତିକୁ ସମୃଦ୍ଧ କରିଲେଣି। ଠିକ୍ ଏହି ସମୟରେ ଜଗନ୍ନାଥ ପ୍ରସାଦଙ୍କ କବିତା ସାଂପ୍ରତିକ କବିତା ଜଗତରେ ମୁହଁ ଦେଖାଇ ନିଜର ସ୍ୱତନ୍ତ୍ରତାକୁ ପ୍ରକାଶ କରେ। ଏତେ ବେଳକୁ କବିତା ଅନେକାଂଶରେ ଦୁର୍ବୋଧତାର ଶିକାର ହେଲାଣି ଓ ସାଧାରଣ ପାଠକଠାରୁ କ୍ରମଶଃ

ଦୂରେଇ ଯାଉଥିବାର ଅଭିଯୋଗ ଆସି ଦେଖାଦେଲାଣି। ଜଗନ୍ନାଥ ପ୍ରସାଦ ଯେ ଏହି ପାଠକୀୟ ପରିବେଶକୁ ଉପଲବ୍ଧି କରି ସେହି ଦୋଷରୁ ନିଜକୁ ମୁକ୍ତ କରି ରଖିବାପାଇଁ ପ୍ରାଥମିକ ସ୍ତରରୁ ଉଦ୍ୟମ କରିଛନ୍ତି ଓ ଶେଷ ପର୍ଯ୍ୟନ୍ତ ସଫଳ ହୋଇଛନ୍ତି ମଧ୍ୟ। ତେଣୁ 'ପ୍ରଥମ ପୁରୁଷ'ର 'ମୁଁ'କାର କହିବାକୁ ଗଲେ ସିଧାସଳଖ ପାଠକଙ୍କ ସହିତ ବାର୍ତ୍ତାଳାପ କରେ ଓ ପାଠକର ନିକଟ ସଂପର୍କ ହେବାକୁ ଉଦ୍ୟମ କରେ। ପାଠକ ଆଉ ଆଧୁନିକ କବିତାର ନାମ ଶୁଣି ଦୂରେଇ ଯାଆନ୍ତି ନାହିଁ; ବରଂ ତାକୁ ଆଦର କରନ୍ତି। ଏହିଭଳି ଏକ ପାଠକୀୟ ପ୍ରତିକ୍ରିୟା ଏହି କ୍ଷେତ୍ରରେ ଏକାନ୍ତ ସ୍ମର୍ତ୍ତବ୍ୟ ନିଶ୍ଚୟ। ଜେପିଙ୍କ କବିତାର ପାଠକ ଶ୍ରୀ ଭାରତ କିଶୋର ପ୍ରଧାନ କୁହନ୍ତି, "କବିତା ଥିଲା ଆମପାଇଁ ଦୁର୍ବୋଧ ତଥା ବିରକ୍ତିକର। .... ଝଂକାରରେ ଆପଣଙ୍କ ଲିଖିତ କବିତା 'ସାର୍ବଜନୀନ' ପଢ଼ିଲା ପରେ କବିତା ପ୍ରତି ଅସ୍ୱାଭାବିକ ଦୁର୍ବଳତା ଜାତ ହେଲା ଏବଂ ଘରେ ଥିବା ପୁରୁଣା ଝଂକାର ସବୁ ଖୋଜି ଆପଣଙ୍କ କବିତା ସବୁ ପଢ଼ିବାକୁ ଆରମ୍ଭ କଲୁ। ଆପଣଙ୍କ କବିତା ପଢ଼ିଲାପରେ କବିତା ପ୍ରତି ଥିବା ଆମ ଭୁଲ ଧାରଣା ଦୂର ହେଲା ଏବଂ ହୃଦୟଙ୍ଗମ ହେଲା କି କବିତା ବିନା ଆଧୁନିକ ସାହିତ୍ୟର ସୃଷ୍ଟି ଅସମ୍ଭବ।"

ଯେତେଦୂର କବିତାର କଥା ଉଠେ, ଜଗନ୍ନାଥ ପ୍ରସାଦ ପାଶ୍ଚାତ୍ୟ କାବ୍ୟରୀତିର ମିଥ୍, ପ୍ରତୀକ ଓ ଚିତ୍ରକଳ୍ପର ଗୋଲୋକଧନ୍ଦାରେ କେବେ ପାଠକଙ୍କୁ ଛିଡ଼ା କରିବାକୁ ଦିଅନ୍ତି ନାହିଁ। ତାଙ୍କ କବିତାରେ ଯେ ଏହି ସବୁ ନାହିଁ, ତାହା ନୁହେଁ; ମାତ୍ର ତାହା ତାଙ୍କ ବକ୍ତବ୍ୟ ପରି ଅତ୍ୟନ୍ତ ସ୍ୱଚ୍ଛ ଓ ବୋଧଗମ୍ୟ। ସେହି କାରଣରୁ ସେ ପାଠକଙ୍କ ନିକଟରେ ଅତି ଆପଣାର ଓ ଏତେ ପ୍ରିୟ। ସେ ବ୍ୟକ୍ତିଗତ ସ୍ତରରେ ଯେତିକି ଅନ୍ତର୍ମୁଖୀ, କବିତାରେ ବା ଗଳ୍ପ-ନାଟକାଦିରେ ସେତିକି ବହିର୍ମୁଖୀ। ତେଣୁ କହିବାକୁ ଗଲେ ଜଗନ୍ନାଥ ପ୍ରସାଦ ସବୁବେଳେ ଜନସାଧାରଣଙ୍କ ନିକଟବର୍ତ୍ତୀ ହେବାକୁ ଚାହିଛନ୍ତି ସବୁବେଳେ, ତାହା ଚିତ୍ରରେ ହେଉ ବା କବିତାରେ, ଗଳ୍ପରେ ହେଉ କି ସମାଲୋଚନାରେ; ଏପରି କି ନାଟକରେ ମଧ୍ୟ। ତେଣୁ ତାଙ୍କର ଚିତ୍ର ଯେପିର ଅତ୍ୟନ୍ତ ସ୍ୱଚ୍ଛ, ନାଟକରେ ବକ୍ତବ୍ୟ ମଧ୍ୟ ଅନୁରୂପ ଭାବରେ ପୂରାପୂରି ସିଧା – ଆଦୌ ବଙ୍କାଟଙ୍କା ନୁହେଁ। କବିତା ମଧ୍ୟ ସେହିପରି ସୁଖପାଠ୍ୟ ଓ ବୋଧଗମ୍ୟ ଓ ଗଳ୍ପ ମଧ୍ୟ ସେହିପରି ଏକାନ୍ତ ହୃଦୟସ୍ପର୍ଶୀ ଓ ପ୍ରତ୍ୟେକଙ୍କର ଅନୁଭବଗାମୀ।

ତାଙ୍କର ସେହି ପ୍ରଥମ କବିତା ସଂକଳନ 'ପ୍ରଥମ ପୁରୁଷ'ର ସମୀକ୍ଷା ପ୍ରସ୍ତୁତ କରିଥିଲେ, ଆଧୁନିକ ଓଡ଼ିଆ କବିତାର ପିତୃପୁରୁଷ କବି ସଚ୍ଚିଦାନନ୍ଦ ରାଉତରାୟ,

ଯାହାକି ଝଂକାର ପତ୍ରିକାର ଫେବ୍ରୁଆରୀ, ୧୯୭୨ ସଂଖ୍ୟାରେ ପ୍ରକାଶ ପାଇଥିଲା। କେବଳ ସଚ୍ଚି ରାଉତରାୟ ନୁହନ୍ତି, ବିଭିନ୍ନ ସମୟରେ ଏହି କବିତା ସଂକଳନ 'ପ୍ରଥମ ପୁରୁଷ'ର ସମୀକ୍ଷା ଆମ ଓଡ଼ିଆ ସାହିତ୍ୟର ଅନେକ ପ୍ରଥିତଯଶା କବି-ସମାଲୋଚକମାନେ ମଧ୍ଯ କରିଛନ୍ତି। ସେମାନଙ୍କ ମଧ୍ୟରେ ନିତ୍ୟାନନ୍ଦ ମହାପାତ୍ର, ଅଖିଳ ମୋହନ ପଟ୍ଟନାୟକ ଓ ହରପ୍ରସାଦ ଦାସ ହେଉଛନ୍ତି ଅନ୍ୟତମ। ଏହାର ହିନ୍ଦୀ ଅନୁବାଦ ଶ୍ରୀ ଶଂକରଲାଲ ପୁରୋହିତଙ୍କ ଦ୍ୱାରା ଅନୂଦିତ ହୋଇ ୧୯୭୫ ମସିହାରେ ଆହ୍ଲାବାଦର ଲହର ପ୍ରକାଶନ ସଂସ୍ଥା ଦ୍ୱାରା ଓ ଇଂରାଜୀରେ ଦେବ ପ୍ରସାଦ ପଟ୍ଟନାୟକଙ୍କ ଦ୍ୱାରା ୧୯୭୬ ମସିହାରେ ଅନୂଦିତ ହୋଇ ଆର୍ଣ୍ଣଲଡ ହାଇନେମ୍ୟାନ ଦ୍ୱାରା ପ୍ରକାଶିତ ହୋଇଥିଲା। ହିନ୍ଦୀର ମୁଖବନ୍ଧ 'ୟେ କବିତାଏଁ' ଶିରୋନାମାରେ ଲେଖିଥିଲେ ପ୍ରସିଦ୍ଧ ହିନ୍ଦୀ କବି ଓ ସମାଲୋଚକ ଓଁକାର ଶରଦ ଓ ଇଂରାଜୀର ମୁଖବନ୍ଧ ଲେଖିଥିଲେ ଅନୁବାଦକ ଦେବ ପଟ୍ଟନାୟକ। ଏହି 'ପ୍ରଥମ ପୁରୁଷ' ପରେ ସେ ଆଉ କେଉଁଠି ଅଟକି ନାହାନ୍ତି, ବରଂ ସମୟ ସହିତ ତାଳଦେଇ ଆଗକୁ ଆଗକୁ ଗତି କରି ଚାଲିଛନ୍ତି। ଏହି କ୍ରମରେ ଆମେ ପାଉ ତାଙ୍କର 'ଅନ୍ୟସବୁ ମୃତ୍ୟୁ'(୧୯୭୬), 'ଯେ ଯାହାର ନିର୍ଜନତା'(୧୯୭୯), 'ଅନ୍ୟଦେଶ ଭିନ୍ନ ସମୟ'(୧୯୮୨) ଠାରୁ ଆରମ୍ଭ କରି 'ପରିକ୍ରମା' (୧୯୯୮) ବା 'ଅସମୟ' (୨୦୦୪) ପର୍ଯ୍ୟନ୍ତ ମୋଟ ୧୧ଟି କବିତା ସଂକଳନ। ବାସ୍ତବରେ କହିବାକୁ ଗଲେ ସେ ଶେଷ ପର୍ଯ୍ୟନ୍ତ କିନ୍ତୁ ଜଣେ କବି ଭାବରେ ପ୍ରତିଷ୍ଠା ପାଇଗଲେ ଓଡ଼ିଆ କବିତା ରାଜ୍ୟର ବିସ୍ତୀର୍ଣ୍ଣ ଇଲାକାରେ, ଯଦିଓ ସେ ସାହିତ୍ୟର ପ୍ରତିଟି ବିଭବରେ ହସ୍ତଚାଳନା କରି ନିଜ ସିଦ୍ଧିର ପରିଚୟ ପ୍ରଦାନ କରି ସାରିଛନ୍ତି। ଏତେ ସଫଳତା ପରେ ବି ପାଠକେ 'ପ୍ରଥମ ପୁରୁଷ'କୁ ଏ ପର୍ଯ୍ୟନ୍ତ ମନେ ରଖିଛନ୍ତି। ଆମ ଓଡ଼ିଆ ସାହିତ୍ୟର ସୌଭାଗ୍ୟ ଯେ ଯେତେବେଳେ ଆମର ଅନେକ ପ୍ରତିଷ୍ଠିତ କବିଙ୍କ କବିତା ସଂକଳନ ସାଧାରଣ ବଜାରରେ ଆଉ ଉପଲବ୍ଧ ହୋଇ ପାରୁନାହିଁ, ସେତେବେଳେ 'ପ୍ରଥମ ପୁରୁଷ' ପ୍ରକାଶନର ୧୦ ବର୍ଷର ପୂର୍ତ୍ତି ଅବସରରେ ତାହାର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇଛି ପ୍ରଫେସର ଖଗେଶ୍ୱର ମହାପାତ୍ରଙ୍କ ତତ୍ତ୍ୱାବଧାନରେ ଓ ଡକ୍ଟର ଗିରିବାଳା ମହାନ୍ତିଙ୍କ ମୁଖବନ୍ଧ ସହିତ, 'କିଛି ବର୍ଷା କିଛି ରାସ୍ତା କିଛି ନିର୍ଜନତା' ଶିରୋନାମାରେ ୧୯୮୧ ମସିହାରେ ଓ ନିକଟରେ ଏହାର ତୃତୀୟ ସଂସ୍କରଣ ପ୍ରକାଶ ପାଇଛି ପ୍ରଫେସର ଗଣେଶ୍ୱର ମିଶ୍ରଙ୍କ ମୁଖବନ୍ଧ ସହିତ 'ଟାଇମପାସ' ପବ୍ଲିକେଶନ ଆନୁକୂଲ୍ୟରୁ।

କବି ଜଗନ୍ନାଥ ପ୍ରସାଦଙ୍କ ପିତା ଶ୍ରୀଧର ଦାସଙ୍କର ବହୁତ ଇଚ୍ଛା ଥିଲା କବିଟିଏ ହେବାପାଇଁ। ସେଥିପାଇଁ ସେ ଯେ ଉଦ୍ୟମ ନ କରିଥିଲେ ତାହା ନୁହେଁ; ତାଙ୍କର କବିତା ସମକାଳୀନ ପତ୍ର-ପତ୍ରିକାରେ ପ୍ରକାଶିତ ହୋଇଛି। କିନ୍ତୁ ଶେଷ ପର୍ଯ୍ୟନ୍ତ ସେ କବି ହୋଇ ପାରିନଥିବାରୁ ତାଙ୍କର ଦୁଃଖ ସେଇଠି ରହି ଯାଇଥିଲା। ସେ ନିଜ ଆତ୍ମଜୀବନୀ 'ସୁଅ ମୁହଁର ପତର'ରେ ସେହି କାରଣରୁ "କବି ହେବା ନୋହିଲା" ଶିରୋନାମାରେ ଏକ ଅନୁଚ୍ଛେଦଟିଏ ମଧ୍ୟ ରଖିଛନ୍ତି। ତାଙ୍କର ସାରସ୍ୱତ ଦୁଃଖକୁ ବୁଝି ପୁତ୍ର ଜଗନ୍ନାଥ ଶେଷ ପର୍ଯ୍ୟନ୍ତ କବି ହୋଇ ରହି ଯାଇଛନ୍ତି। ଅନ୍ୟପକ୍ଷରେ କହିବାକୁ ଗଲେ ତାଙ୍କ ବାପାଙ୍କର ସ୍ୱପ୍ନ ଯେମିତି ତାଙ୍କ କୃତି ମଧ୍ୟରେ ସାକାର ହୋଇ ଉଠିଛି। କବିତା ପାଇଁ ଜଗନ୍ନାଥ ପ୍ରସାଦ ବହୁ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି। 'ଯେ ଯାହାର ନିର୍ଜନତା' ପାଇଁ ୧୯୭୫ ମସିହାରେ ସେ ଓଡ଼ିଶା ସାହିତ୍ୟ ଏକାଡେମୀ, 'ଆହ୍ନିକ' ପାଇଁ ସେ ୧୯୯୧ ମସିହାରେ 'କେନ୍ଦ୍ର ସାହିତ୍ୟ ଅକାଦେମୀ' ପୁରସ୍କାର ଲାଭ କରିବା ସହିତ 'ପରିକ୍ରମା' ପାଇଁ ସେ ୨୦୦୬ ମସିହାରେ 'ସରସ୍ୱତୀ ସମ୍ମାନ'ରେ ସମ୍ମାନିତ ହୋଇଛନ୍ତି। ଏହା ଓଡ଼ିଆ ପାଠକମାନଙ୍କ ପାଇଁ କିଛି କମ୍ ଗୌରବର କଥା ନୁହେଁ। ଆଜି ଯଦି ଶ୍ରୀଧର ଦାସ ବଞ୍ଚି ଥାଆନ୍ତେ ପୁତ୍ର ଜଗନ୍‌ର ଏହି କୃତିତ୍ୱରେ ସେ ସତରେ କେତେ ଖୁସି ଅନୁଭବ ନ କରୁଥାନ୍ତେ !

## ନାଟକରୁ ରଂଗମଞ୍ଚ ଓ ପ୍ରେକ୍ଷାଳୟରୁ ସୁଟିଂ ସ୍ଥଳ: ପର୍ଦ୍ଦା ଆଢୁଆଳରେ ଜୀବନ

ଜଗନ୍ନାଥ ପ୍ରସାଦଙ୍କର ନାଟକ ପ୍ରତି ତୃଷ୍ଣା ସଂପୂର୍ଣ୍ଣ ଭାବରେ ଆକସ୍ମିକ କହିଲେ ଆଦୌ ଅତ୍ୟୁକ୍ତି ହେବନାହିଁ। କାରଣ ସେ ତାଙ୍କ ଆଦ୍ୟ ସାରସ୍ୱତ ଜୀବନରେ କବିତା, ଗଳ୍ପ ଓ ଚିତ୍ରକଳା ପ୍ରତି ନିଜର ଆଗ୍ରହ ପ୍ରକାଶ କରିଥିଲେ ମଧ୍ୟ ନାଟକ ପ୍ରତି କେବେ ମନ ବଳାଇ ନଥିଲେ। ଅବଶ୍ୟ ନିଜର ମନକୁ ଟିକିଏ ହାଲୁକା କରିବାପାଇଁ ସେ ଚଳଚ୍ଚିତ୍ର ଦେଖିବାକୁ ପସନ୍ଦ କରୁଥିଲେ। ଆହ୍ଲାବାଦ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କଲାବେଳେ ରାତିରେ ତ ସେ କେବେ ପଢ଼ନ୍ତି ନାହିଁ। ବରଂ ମନକୁ ହାଲୁକା କରିବାପାଇଁ ସେ ବାହାରେ ବୁଲାବୁଲି କରନ୍ତି। ସମୟକ୍ରମେ ସେ ସେହି ଆହ୍ଲାବାଦ ବିଶ୍ୱବିଦ୍ୟାଳୟରେ ଅବଶ୍ୟ ପେଣ୍ଟିଙ୍ଗସ୍ କ୍ଲାସ୍‌ରେ ଯୋଗ ଦେଇ ଡିପ୍ଲୋମା କୋର୍ସ କରିଛନ୍ତି ଓ କିଛି ଦିନ ଚିତ୍ରକଳାକୁ ଅଭ୍ୟାସ କରିଛନ୍ତି; ତେବେ କେବେ ଅଭିନୟ ଦିଗରେ ମନୋନିବେଶ କରିନାହାନ୍ତି। କିନ୍ତୁ ସବୁଠାରୁ ବଡ଼ କଥାହେଲା କଳାହାଣ୍ଡି ପରି ଅତ୍ୟନ୍ତ ଅଧୁଷିତ ଅଞ୍ଚଳରେ ଜଣେ କଲେକ୍ଟର ଭାବରେ ଯୋଗ ଦେଇଥିଲେ ମଧ୍ୟ ସେ ସମସାମୟିକ ସାହିତ୍ୟିକ ବାତାବରଣ ସହିତ ଯୋଗାଯୋଗ ରକ୍ଷା କରୁଥିଲେ, ବିଶେଷ କରି ଆଧୁନିକ ଜୀବନ ଓ ସାହିତ୍ୟର ପେଣ୍ଠସ୍ଥଳୀ ଭାବରେ ପରିଗଣିତ ହେଉଥିବା କଲିକତା ନଗରୀ ସହିତ ସେ ସଦା ସର୍ବଦା ସଂପର୍କ ରକ୍ଷା କରୁଥିଲେ। ଏହି ମର୍ମରେ ସେ ନିଜର ଅନୁଭୂତିକୁ ସତେ ଯେପରି ନିଜ ହୃଦୟ ମଧ୍ୟରେ ଅତି ଯତ୍ନରେ ସାଇତି ରଖୁଥିଲେ, ଆସନ୍ନ ସମୟ ଓ ସୁଯୋଗରେ ତାହାକୁ ପ୍ରୟୋଗ କରିବାପାଇଁ।

ଥରେ ୧୯୬୪ ମସିହା ବେଳକୁ ଜଗନ୍ନାଥ ପ୍ରସାଦ ଯାଇଥିଲେ କଲିକତା ନଗରୀକୁ, କୌଣସି ଏକ କାମରେ। ସେଠାରେ ଏକ ମଧ୍ୟାହ୍ନରେ ତାଙ୍କ ସହିତ ସାକ୍ଷାତ ହୁଏ ଅନନ୍ୟ କଳାକାର ଶ୍ରୀ ଅନନ୍ତ ମହାପାତ୍ରଙ୍କ ସହିତ। ଅନନ୍ତ ମହାପାତ୍ର ଏହା ପୂର୍ବରୁ ଜଗନ୍ନାଥ ପ୍ରସାଦଙ୍କ ସ୍ତ୍ରୀ ମିତ୍ରାଙ୍କୁ ଭଲ ଭାବରେ ଜାଣିଥିଲେ। କାରଣ କଲେଜ ଜୀବନରେ ସେମାନେ ଏକାଠି କୌଣସି ଏକ ଇଣ୍ଟର ୟୁନିଭର୍ସିଟି ପ୍ରତିଯୋଗିତାରେ ଭାଗ ନେବାପାଇଁ ଦିଲ୍ଲୀ ଯାଇଥିଲେ ଓ ପରେ କେବଳ ଏତିକି ଜାଣିଥିଲେ ଯେ ସେ କୌଣସି ଆଇ.ଏ.ଏସ୍. ଅଫିସରଙ୍କୁ ବିବାହ କରିଛନ୍ତି ବୋଲି। ମାତ୍ର ଏହି ସମୟ ବେଳକୁ ସେ ସିନେମାରେ ଅଭିନୟ କରିବା ସହିତ ନାଟ୍ୟ ଆନ୍ଦୋଳନରେ ନିଜକୁ ଜଡ଼ିତ ରଖିଥାନ୍ତି। ଏତେବେଳକୁ ଜଗନ୍ନାଥ ପ୍ରସାଦଙ୍କୁ ସମସ୍ତେ ଶ୍ରଦ୍ଧାରେ ଜେପି ବୋଲି ଡାକିବାକୁ ଆରମ୍ଭ କଲେଣି। ଜେପି ଓ ମିତ୍ରାଙ୍କୁ ଅନନ୍ତ ମହାପାତ୍ର ଏନ.ଟି. ଷ୍ଟୁଡିଓକୁ ନେଇଗଲେ। ସେଠାରେ ସେତେବେଳେ ବଙ୍ଗଳାର ଅତ୍ୟନ୍ତ ଖ୍ୟାତନାମା ହିରୋ ଉତ୍ତମକୁମାରଙ୍କର ସୁଟିଂ ଚାଲିଥିଲା। ଅନନ୍ତ ମହାପାତ୍ରଙ୍କର ଉତ୍ତମ କୁମାରଙ୍କ ସହିତ ପରିଚିତି ଥିଲା। ସିନେମାର ସୁଟିଂ ଦେଖା ସରିବାପରେ ସେମାନେ ଖିଆ ପିଆ ସହ ବେଶ୍ ଆଳାପ ଆଲୋଚନାରେ ମଜ୍ଜି ରହିଲେ। ସେହି ସମୟରେ ଅନନ୍ତ ମହାପାତ୍ର ଅନୁଭବ କରିଥିଲେ ଯେ ଜେପିଙ୍କର ସିନେମା  ଓ ନାଟକ ପ୍ରତି ମଧ୍ୟ ପ୍ରଗାଢ଼ ରୁଚି ରହିଛି। ତାଙ୍କର ସେ ଦିଗରେ ମନ୍ତବ୍ୟ ଏହିପରି : "ମତେ ବେଶ୍ ମଜ୍ଜା ଲାଗିଥିଲା ଯେ, ଜେପି କେବଳ ସାହିତ୍ୟ ନୁହେଁ, ସିନେମା, ନାଟକ ଆଦି ସବୁଥିରେ ମାହିର ଥିଲେ। ସାଧାରଣତଃ ଆଇ.ଏ.ଏସ. ଅଫିସରମାନଙ୍କୁ ଆମେ ଏସବୁ ସହ ସାମିଲ ଥା'ନ୍ତି ବୋଲି ଭାବୁ ନଥିଲୁ।" ବାସ୍ତବରେ ଜଗନ୍ନାଥ ପ୍ରସାଦ ସେତେବେଳକୁ ନାଟକ ରଚନା ଦିଗରେ ନିଜର ଲେଖନୀ ସଂଚାଳନ କରିସାରିଥିଲେ। କେବଳ ଲୋକଲୋଚନକୁ ଆସିବା ଯାହା ବାକି  ରହିଥିଲା।

ଏହି ଘଟଣାର ପ୍ରାୟ ଦୁଇବର୍ଷ ପରେ ଜେପି ଭୁବନେଶ୍ୱରକୁ ବଦଳି ହୋଇ ଆସିଲେ। ସେତେବେଳକୁ ଅନନ୍ତ ମହାପାତ୍ରଙ୍କ ସହିତ ଜେପିଙ୍କର ପରିଚିତି ପ୍ରାୟ ପ୍ରଗାଢ଼ ହୋଇ ସାରିଥିଲା। ଭୁବନେଶ୍ୱରରେ ପ୍ରାୟ ପ୍ରତିଟି ସନ୍ଧ୍ୟା ସାହିତ୍ୟ ଆସରରେ କଟୁଥିଲା। ଏହି ଆସରରେ ପ୍ରାୟ ରହିଥାନ୍ତି ଜେପିଙ୍କ ସହିତ ଓଡ଼ିଶାର ଅନ୍ୟତମ ବିଶିଷ୍ଟ ଗାଳ୍ପିକ ଅଖିଳ ମୋହନ ପଟ୍ଟନାୟକ , ଓଡ଼ିଶା ନବନାଟ୍ୟ ଆନ୍ଦୋଳନର ଅନ୍ୟତମ ପୁରୋଧା ବିଶ୍ୱଜିତ ଦାସ , ଖ୍ୟାତନାମା ଶଲ୍ୟ ଚିକିତ୍ସକ ଡକ୍ଟର ମଧୁସୂଦନ

ଖାଡ଼ଙ୍ଗା, ଖ୍ୟାତନାମା ଓଡ଼ିଶୀ ନୃତ୍ୟଶିଳ୍ପୀ ତଥା ଉତ୍କଳ ସଂଗୀତ ବିଦ୍ୟାଳୟର ତତ୍କାଳୀନ ଅଧ୍ୟକ୍ଷା ମିନତୀ ମିଶ୍ର  ଓ ଅନନ୍ତ ମହାପାତ୍ର। ସନ୍ଧ୍ୟାସବୁ କଟେ ଅଖିଳ ମୋହନଙ୍କ ଗପ, ଜେପିଙ୍କ କବିତା ଓ ବିଶ୍ୱଜିତଙ୍କ ନାଟକର ଆଲୋଚନାରେ। କହିବାକୁ ଗଲେ ସମକାଳୀନ ନାଟକ ଉପରେ ପ୍ରାୟ ଚର୍ଚ୍ଚା ହେଉଥିଲା ଅଧିକ। ଏତାଦୃଶ ଆଲୋଚନା ଜେପିଙ୍କୁ ନିଶ୍ଚିତଭାବରେ ପ୍ରଭାବିତ କରିଥିବ ନାଟକ ରଚନାପାଇଁ। ପ୍ରାୟ ୧୯୭୦ ମସିହାରେ କ୍ଲବ୍‌ରେ ଏକ ନାଟକ ମଞ୍ଚସ୍ଥ କରାଯିବାର ପ୍ରସ୍ତାବ କ୍ରମେ ଜେପି ପୂର୍ବରୁ ଲେଖିଥିବା ତାଙ୍କର ଗୋଟିଏ ଛୋଟ ନାଟକ ଅର୍ପଣ କଲେ, ଯାହାକୁ ନିର୍ଦ୍ଦେଶନା ଦେଇଥିଲେ ଖୋଦ୍ ଅନନ୍ତ ମହାପାତ୍ର। ସେହି ନାଟକରେ ଅଭିନୟ କରିଥିଲେ ସ୍ୱୟଂ ନିର୍ଦ୍ଦେଶକ ଅନନ୍ତ ମହାପାତ୍ରଙ୍କ ସହିତ ଜଗନ୍ନାଥ ପ୍ରସାଦ ଓ ତାଙ୍କ ସ୍ତ୍ରୀ ମିତ୍ରା। ନାଟକରେ ଆହୁରି ମଧ୍ୟ ଅଭିନୟ କରିଥିଲେ ଅନନ୍ତ ପ୍ରସାଦ ମହାନ୍ତି, ଜୁଲି ମିଶ୍ର ଓ ସୁବ୍ରମଣିୟମ୍। ସୁବ୍ରମଣିୟମ୍ ଓଡ଼ିଆ ନ ଜାଣି ଥିବାରୁ ସେ ଏକ ଛୋଟ ବେହେରା ଚରିତ୍ରରେ ଅଭିନୟ କରିଥିଲେ, ତାଙ୍କର ସଂଳାପ କେବଳ 'ଆଚ୍ଛା' ଶବ୍ଦଟିଏ ଥିଲା। ସେହି ନାଟକଟି ହେଉଛି 'ଜଣେ ଜଣକ ପାଇଁ' (ରଚନାକାଳ ୧୯୬୦ ମସିହା)। କହିବାକୁ ଗଲେ ପ୍ରାୟ ସେହିଠାରୁ ଆରମ୍ଭ ହୁଏ ଜେପିଙ୍କ ପ୍ରତ୍ୟକ୍ଷ  ଭାବରେ ନାଟକ ରଚନା ଓ ଅଭିନୟ ଜୀବନର ଅୟମାରମ୍ଭ।

ସେହି ନାଟକର ବିଷୟବସ୍ତୁ ଥିଲା ସଂପୂର୍ଣ୍ଣ ଆଧୁନିକ ରୁଚିର। ଆଜିକାଲି ସଚରାଚରରେ ଯେପରି ହେଉଛି ଯେ ଝିଅ-ପୁଅ ବିବାହ ପୂର୍ବରୁ ପରସ୍ପରକୁ ଦେଖିବେ ଓ ଜାଣିବେ, ପରେ ହେବ ବିବାହ; ସେହିଭଳି ଏକ ଘଟଣାକୁ ନେଇ ନାଟକଟି ରଚିତ। ନାଟକଟି ଅତି ଛୋଟ ନାଟକ, ତେବେ ପ୍ରଥମରୁ ହିଁ ଅତ୍ୟନ୍ତ ହାସ୍ୟ ଉଦ୍ରେକକାରୀ। ଜମା ମନେ ହେବ ନାହିଁ ଯେ ତାହା ଗୋଟିଏ ଜଟିଳ ବିଷୟକୁ ନେଇ ଗତି କରୁଛି ବୋଲି। ପ୍ରଥମ ଦୃଶ୍ୟରେ ଜଣା ପଡୁଛି ଯେ ଝିଅର ବାପା  ଜଣେ ଜଜ୍ ସାହେବ। ସେ ପଙ୍କ୍‌ଚୁଆଲିଟି ଉପରେ ଅତ୍ୟନ୍ତ ବିଶ୍ୱାସ ରଖନ୍ତି। ସେ ଝିଅକୁ ଏକଦମ୍ ଠିକ୍ ସମୟରେ ଧରି ଆସିଛନ୍ତି ପୁଅଙ୍କ ଘରକୁ ଓ ତାଙ୍କର ଅନ୍ୟ କୌଣସି ସ୍ଥାନରେ କାମ ଥିବାରୁ ଝିଅଙ୍କୁ ଛାଡ଼ି ଚାଲି ଯାଇଛନ୍ତି ଓ ଗଲା ବେଳେ ପୁଅକୁ ତାଙ୍କ ଘରେ ତା' ପରଦିନ ରାତ୍ରଭୋଜନ ପାଇଁ ମଧ୍ୟ ନିମନ୍ତ୍ରଣ କରି ଯାଇଛନ୍ତି। ଏହିଠାରୁ ଆରମ୍ଭ ହୁଏ କମେଡ଼ି। ଝିଅର ନାମ ହେଉଛି ଅତ୍ୟନ୍ତ କିମ୍ଭୁତକିମାକାର, ଡିଭା। ତା' ସାଙ୍ଗକୁ ସେ ହେଉଛି କାଲୁଣି, ତାକୁ ଜୋରରେ କହିଲେ ଶୁଣାଯାଏ। ତାକୁ ଭଲ ଭାବରେ ଦେଖା ଯାଏ ନାହିଁ, ଚଷମା ପିନ୍ଧେ; ହେଲେ ତା' ଚଷମା କେଉଁଠି ହଜିଗଲା, ସେ ତାକୁ ଖୋଜିବାରେ ବ୍ୟସ୍ତ। ସେ

ଫାଷ୍ଟ ଇଅରରେ ଦୁଇବର୍ଷ ହେଲା ପଢୁଛି। ତା'ର ବାମ ଗୋଡ଼ରେ ପୁଣି ସେହି ପୁରୁଣା ଦରଜ ଆରମ୍ଭ ହୋଇ ଯିବାରୁ ସେ ତୁରନ୍ତ ଘରକୁ ଯିବାକୁ ଚାହିଁଛି। ଯଦିଓ ଜଜ୍ ସାହେବଙ୍କ କହିବାନୁସାରେ ତାଙ୍କ ଝିଅ ଭଲ ପାଠ ପଢ଼େ ଓ ନାଚ-ଗୀତ ମଧ୍ୟ ଜାଣେ। ତେବେ ପୁଅର ବାପା ପ୍ରତ୍ୟକ୍ଷ ଭାବରେ ଏପରି ଝିଅକୁ ନିଜ ଆଖିରେ ଦେଖି ବୋହୂ କରିବାକୁ ଇଚ୍ଛା କରିନାହାନ୍ତି। ମାତ୍ର ପୁଅ ଚାହିଁଛି ସେ ଝିଅକୁ ବିବାହ କରିବାକୁ ଏବଂ ତା' ପରଦିନ ଝିଅର ବାପାଙ୍କ ନିମନ୍ତ୍ରଣ ରକ୍ଷା କରି ତାଙ୍କ ଘରକୁ ଡିନର କରି ଯିବାକୁ। ଏଠି କହିବାକୁ ଗଲେ ସସପେନ୍ସ ଆରମ୍ଭ ହୁଏ। ଦର୍ଶକ ଏଇଠି ଭାବିବେ ଯେ ପୁଅ ଏପରି ଝିଅକୁ କାହିଁକି ବାହା ହେବାକୁ ଇଚ୍ଛା କରୁଛି ?

ଏହା ପରେ ପରେ ଦ୍ୱିତୀୟ ଦୃଶ୍ୟ ଆରମ୍ଭ ହୁଏ। ଏଠି ପୁଅ ଠିକ୍ ସମୟରେ ଯାଇ ପହଞ୍ଚିଛନ୍ତି ଜଜ୍ ସାହେବଙ୍କ ଘରେ। ଜଜ୍‌ଙ୍କ କଥାର ଅନୁକରଣ କଲାପରି ସେ ମଧ୍ୟ ବାରମ୍ବାର କହୁଛି ଯେ ସେ ପଂକଚ୍ୟୁଆଲିଟି ଉପରେ ବିଶ୍ୱାସ କରେ ବୋଲି। ତା'ର ବ୍ୟବହାରରୁ ମନେହୁଏ ସେ ଯେପରି ଅତ୍ୟଧିକ ମଦ୍ୟପାନ କରିଛି ଓ ଜଜ୍ ସାହେବଙ୍କ ଘରକୁ ନିଜର ଘର ମନେ କରିଛି ଓ ଭାବୁଛି ଯେ ଜଜ୍ ସାହେବ ଓ ତାଙ୍କ ଝିଅ ତା ଘରକୁ ତାଙ୍କର ନିମନ୍ତ୍ରଣ ରକ୍ଷା କରି ଆସିଛନ୍ତି ଡିନର ପାଇଁ। ଏଠି ମଧ୍ୟ ସେହି ଅବସ୍ଥା ଆସି ଉପସ୍ଥିତ ହୁଏ ଯେ ସେମାନେ ମଧ୍ୟ ଏପରି ପୁଅକୁ ଝିଅ ବିଭା ଦେବାପାଇଁ ଇଚ୍ଛା ପ୍ରକାଶ କରନ୍ତି ନାହିଁ। ଏଠି ଦର୍ଶକ ଦେଖନ୍ତି ଯେ ପ୍ରଥମ ଦୃଶ୍ୟର ତିଭା ହେଉଛି ବାସ୍ତବରେ ପ୍ରତିଭା। ସେ କାଲୁଣି କି ଅନ୍ଧ ନୁହେଁ। ଏପରି କି ତାହାର ରିଉମାଟିଜିମ ମଧ୍ୟ ନାହିଁ। ପ୍ରତିଭା ତା' ବାପାଙ୍କୁ ବେଡରୁମ୍‌ରେ ଛାଡ଼ିଲା ପରେ ଆସିଛି ଓ ସେ ପୁଅକୁ ବାହାରି ଯିବାପାଇଁ କହିଛି। ଏବଂ ଉଭୟଙ୍କ କଥୋପକଥନରୁ ଜଣାପଡୁଛି ଯେ ଉଭୟ କେବଳ ଅଭିନୟ କରିଛନ୍ତି। କାହାରି ବାହା ହେବାର ଇଚ୍ଛା ନଥିବାରୁ ସେମାନେ ଜାଣି ଶୁଣି ଏପରି କରିଛନ୍ତି। ପ୍ରଥମେ ଝିଅ ଅଭିନୟ କରିଥିଲା, ପରେ କିନ୍ତୁ କଲା ପୁଅ।

ଆମ ହିନ୍ଦୁ ଦାର୍ଶନିକମାନେ କୁହନ୍ତି ମନର ବିଚଳିତ ଅବସ୍ଥାରେ ଏକରୁ ଦଶ ଗଣିଲେ ମନରେ ସ୍ଥିରତା ଆସିଥାଏ ବୋଲି। ନାଟକର ପ୍ରଥମ ଦୃଶ୍ୟରେ ପୁଅର ବାପା (ପ୍ରଫେସର)ଙ୍କର ଉପଦେଶ ଏକରୁ ପନ୍ଦର ଯାଏ ଗଣିବାପାଇଁ; ଯାହାକି ଦର୍ଶକମାନେ ଦେଖନ୍ତି ଦ୍ୱିତୀୟ ଦୃଶ୍ୟରେ, ପୁଅ ଜଜ ସାହେବଙ୍କ ଘରୁ ଫେରିବା ପରେ ପ୍ରତିଭା ସେହି ଅଂକ ଗଣିବାକୁ ଆରମ୍ଭ କରିଦେଇଛି।

ପ୍ରେକ୍ଷାଳୟରୁ ଦର୍ଶକ ବାହରିଲା ବେଳକୁ ତା’ ମୁହଁରେ କିନ୍ତୁ ରହିଥାଏ ହସ ବଦଳରେ ଅତ୍ୟନ୍ତ ଗମ୍ଭୀରତା। କିଏ ଜାଣେ ଆମେ ଯାହା ଦେଖୁ, ତାହା ଭୁଲ୍। ସତ୍ୟ ହୁଏତ ଆଉ କିଛି।

ଏହି ଛୋଟ ନାଟକ ପରି ସେ ଆଉ ଏକ ଛୋଟ ନାଟକ ମଧ୍ୟ ଲେଖିଛନ୍ତି, “ଆକସ୍ମିକ”। ଯୌତୁକ ପ୍ରସଙ୍ଗକୁ ନେଇ ଏଇ ନାଟକଟି ରଚିତ। ପରିଣତ ବୟସରେ ବାହାସାହା ହୋଇ ମଧ୍ୟ ମଣିଷ ଯେପରି ମାଟ୍ରିମୋନିଆଲ୍‌କୁ ଦେଖେ, ମଣିଷର ସେହି ଅବସ୍ଥାକୁ ଏହି ନାଟକରେ ପ୍ରସଙ୍ଗ କ୍ରମେ ଉଲ୍ଲେଖ କରାଯାଇଛି। ଉଭୟ ନାଟକରେ ସାଂପ୍ରତିକ ବିବାହ ବ୍ୟବସ୍ଥାରେ ଦେଖା ଦେଉଥିବା ସମସ୍ୟାକୁ ହିଁ କେବଳ ଅତ୍ୟନ୍ତ ମାର୍ମିକ ଭାବରେ ଉପସ୍ଥାପିତ କରାଯାଇଛି। ଏହି କାରଣରୁ ବିଶିଷ୍ଟ ହିନ୍ଦୀ ଲେଖକ ପଦ୍ମଭୂଷଣ ଶ୍ରୀ ବିଷ୍ଣୁ ପ୍ରଭାକର କୁହନ୍ତି, “ଲେଖକ ମାନବ-ମନୋବିଜ୍ଞାନର ଜ୍ଞାତା। ଏହି କାରଣରୁ ଅତି ସହଜ ଭାବରେ ଏପରି ସ୍ଥିତିକୁ ସୃଷ୍ଟି କରାଇ ପାରନ୍ତି, ଯେଉଁଠି ପ୍ରତ୍ୟେକ ବ୍ୟକ୍ତି ନିରାଭରଣ ହୋଇଉଠେ।” ପୁଣି ମଧ୍ୟ ସେ କୁହନ୍ତି, “ଦୁଇଗୋଟି ଏକାଂକିକାର ବିଷୟବସ୍ତୁ ସଂଯୋଗ ବଶତଃ ‘ବିବାହ’କୁ କେନ୍ଦ୍ରକରି ଗଠିତ ହୋଇଥିଲେ ମଧ୍ୟ ସେହି ସଂଯୋଗ କେବେ ଭିତ୍ତିହୀନ ବୋଲି ମନେ ହୁଏନାହିଁ। ସାଂପ୍ରତିକ ସାହିତ୍ୟର ମୁଖ୍ୟ ଚିନ୍ତନରେ ଗୋଟିଏ ନାରୀ ବି ରହୁଛି, ଏବଂ ନାରୀ ମଧ୍ୟ ବିବାହ ସହିତ ବାନ୍ଧି ହୋଇ ରହୁଛି। ବିବାହ ବ୍ୟବସ୍ଥା ଆଜି କେଉଁ ପ୍ରକାରର ବିଡ଼ମ୍ବନାରେ ପରିଣତ ହୋଇ ଯାଇଛି ତାହା ସର୍ବବିଦିତ। ବିବାହ କେବେ ହେବ, ଏହି ଦାୟିତ୍ୱ ବାପା-ମା’ଙ୍କର ନା ପୁଅ-ଝିଅମାନଙ୍କର ନିଜ ନିଜର ଜୀବନସାଥୀ ବାଛିବାର ଅଧିକାର ରହିଛି ? ପ୍ରେମ ବିବାହ ଓ ଯୌତୁକ ପ୍ରଥା ବା ସେହିପରି ଥିବା ଅନେକ ସମସ୍ୟାମାନ ଆଜି ଆମମାନଙ୍କୁ ବ୍ୟତିବ୍ୟସ୍ତ କରୁଛି। ଏହି ଦୁଇଟି ଏକାଂକିକା ମାଧ୍ୟମରେ ଲେଖକ ଏହି ଜ୍ୱଳନ୍ତ ସମସ୍ୟାମାନର ଅସଙ୍ଗତି ପ୍ରତି ଦୃଷ୍ଟି ଆକର୍ଷଣ କରାଇଛନ୍ତି।”

ଏହି ଦୁଇଟି ନାଟକ ‘ଜଣେ ଜଣକ ପାଇଁ’ (ଦୁଇଟି ଦୃଶ୍ୟଯୁକ୍ତ) ଓ ‘ଆକସ୍ମିକ’(ଗୋଟିଏ ଦୃଶ୍ୟଯୁକ୍ତ)କୁ ନେଇ ଜଗନ୍ନାଥ ପ୍ରସାଦଙ୍କର “ପୂର୍ବରାଗ” ସଂକଳିତ। ଯେହେତୁ ଉଭୟ ନାଟକର ଅଂକ ସଂଖ୍ୟା ଏକ, ତେଣୁ ତାହା ଏକାଂକିକା ଶ୍ରେଣୀରେ ସ୍ଥାନିତ। ପରେ ପରେ କିନ୍ତୁ ସେ ଆଉ ଅଟକି ନାହାନ୍ତି, ଗଳ୍ପ ଓ କବିତା ସହିତ ସେ ନାଟକ ପରେ ନାଟକ ଲେଖିଛନ୍ତି। ‘ପୂର୍ବରାଗ’କୁ ଛାଡ଼ି ଦେଲେ ତାଙ୍କର ମୋଟ ନାଟକ ସଂଖ୍ୟା ଚାରିଗୋଟି : ସୂର୍ଯ୍ୟାସ୍ତ ପୂର୍ବରୁ (୧୯୭୨),

ସବାଶେଷ ଲୋକ (୧୯୭୫), ଅସଙ୍ଗତ ନାଟକ (୧୯୭୯) ଓ ସୁନ୍ଦର ଦାସ (୧୯୯୩)।

ତେବେ 'ପୂର୍ବରାଗ' ପରେ ସେ ଆଉ କେତେକ ନାଟକ ଲେଖି ନିଜର ଆତ୍ମପ୍ରତ୍ୟୟ ସୃଷ୍ଟି କରିବା ସହିତ ବେଶ୍ ଲୋକଲୋଚନକୁ ଆକୃଷ୍ଟ କରି ପାରିଥିଲେ। ସେସବୁ ହେଉଛି କିଛି ପରିମାଣରେ ବେତାର ନାଟକ। ବେତାର ନାଟକ ମୂଳରେ ରହିଥିବା କାହାଣୀଟିକୁ ଅବତାରଣା କରିଛନ୍ତି ପ୍ରଫେସର ଗଣେଶ୍ୱର ମିଶ୍ର ତାଙ୍କର 'ସୃଜନଯାତ୍ରା'ରେ। ଘଟଣାଟି ହେଉଛି ଯେ,୧୯୭୨ ମସିହା ବେଳକୁ ସୃଜନୀ ନାଟ୍ୟ ସଂସ୍ଥା ଦ୍ୱାରା ମନୋରଂଜନ ଦାସଙ୍କର 'ଅମୃତସ୍ୟପୁତ୍ର' ନାଟକ କଟକର ନାରୀସେବା ସଂଘଠାରେ ଅନୁଷ୍ଠିତ ହୋଇଥିଲା ଓ ତାହାର ସମୀକ୍ଷା ଲେଖିଥିଲେ ଜଗନ୍ନାଥ ପ୍ରସାଦ, ଯାହା ଦିଲ୍ଲୀରୁ ପ୍ରକାଶିତ ଇଂରାଜୀ ପତ୍ରିକା 'ଇନାକ୍ଟ'ରେ ପ୍ରକାଶ ଲାଭକରିଥିଲା। ନାଟକର ରିହାରସେଲ ବେଳେ ସେ ନିଜେ ବସି ରହୁଥିଲେ ଓ ଅନ୍ୟମାନଙ୍କୁ ସେଠାରେ ବିଳମ୍ବିତ ରାତି ପର୍ଯ୍ୟନ୍ତ ବସିରହି ନାଟକରେ ଅଭିନୟ କରୁଥିବା କଳାକାରମାନଙ୍କୁ ଉତ୍ସାହିତ କରିବାକୁ ପରାମର୍ଶ ଦେଉଥିଲେ। ଏକଥାକୁ ସ୍ୱୟଂ ମନୋରଂଜନ ଦାସ ମଧ୍ୟ ସ୍ୱୀକାର କରିଛନ୍ତି ତାଙ୍କର ଆତ୍ମଜୀବନୀ 'ସ୍ମୃତି ସଂଳାପ'ରେ। କଟକ ଆକାଶବାଣୀର ନାଟକ ବିଭାଗର ଡାଇରେକ୍ଟର ଜେପିଙ୍କୁ ତାଙ୍କ ରେଡିଓପାଇଁ ନାଟକ ଲେଖିବାପାଇଁ ଉତ୍ସାହିତ କଲେ। ଜଗନ୍ନାଥ ପ୍ରସାଦ ବଂଧୁଙ୍କ ଖାତିରରେ କିଛି ନାଟକ ମଧ୍ୟ ଲେଖିଥିଲେ ଓ ସେସବୁ ରେଡ଼ିଓରେ ପ୍ରସାରିତ ହୋଇ ବେଶ୍ ଲୋକାଦୃତ ହୋଇ ପାରିଥିଲା। ସେହିସବୁ ନାଟକ ମଧ୍ୟରେ 'କାଚଘର'ନାଟକଟି ବେଶ୍ ଚର୍ଚ୍ଚିତ ହୋଇଥିଲା ବୋଲି ପ୍ରଫେସର ଗଣେଶ୍ୱର ମିଶ୍ର କହିଛନ୍ତି, ଯାହାକି ତରୁଣ ଛାତ୍ରମାନଙ୍କର ସମସ୍ୟା ଓ ଅସ୍ଥିରତାକୁ କେନ୍ଦ୍ର କରି ରଚିତ ହୋଇଥିଲା।

ନାଟକ ମଧ୍ୟରେ 'ସୂର୍ଯ୍ୟାସ୍ତ ପୂର୍ବରୁ' ତାଙ୍କର ପ୍ରଥମ ନାଟକ ଓ ଆନ୍ତର୍ଜାତିକ କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିଥିବା ଏକ ଅତ୍ୟନ୍ତ ସଫଳ ନାଟକ। ପ୍ରଥମେ ଏହି ନାଟକଟି ୧୯୭୨ ମସିହା ବେଳକୁ ଲେଖା ସରି କଲିକତାରୁ କଣ୍ଠୁରୀଚରଣ ଦାସଙ୍କ ସଂପାଦନାରେ ପ୍ରକାଶ ଲାଭ କରୁଥିବା ଓଡ଼ିଆ ପତ୍ରିକା 'ନବରବି'ରେ ପ୍ରକାଶିତ ହୋଇଥିଲା। ପରେ ପରେ ଆକାଶବାଣୀରେ କାର୍ଯ୍ୟ କରୁଥିବା ଶିବଶେଖର ସରକାର ଏହାର ବଙ୍ଗଳା ଅନୁବାଦ କରିଥିଲେ। ଏହି ବଂଗଳା ଅନୁବାଦ 'ସୂର୍ଯ୍ୟାସ୍ତେର ଆଗେ' କଲିକତାର ଥିଏଟର ଗିଲ୍ଡ ସଂସ୍ଥାଦ୍ୱାରା ମଞ୍ଚସ୍ଥ ହୋଇଥିଲା

ସେହି ୧୯୭୨ ମସିହାରେ। ଏହି ବଂଗଳା ନାଟକଟିକୁ ନିର୍ଦ୍ଦେଶନା ଦେଇଥିଲେ ଶ୍ୟାମଲ ସେନ୍ ଓ ସେଥିରେ ଅଭିନୟ କରିଥିଲେ ସମୀର ଲାହଡି, ଦ୍ୱିଜୁ ଭଓ୍ୱାଲ, ମଞ୍ଜୁ ବ୍ରହ୍ମଚାରୀ ଓ ଚିତ୍ରା ସେନ୍ ପ୍ରମୁଖ କଳାକାରମାନେ। ପରେ ପରେ ଏହି ନାଟକଟି କଟକ ଆକାଶବାଣୀରୁ ପ୍ରଚାରିତ ହୋଇ କୌଣସି ପୁରସ୍କାର ଲାଭ କରିଥିବାରୁ ଏହାର ଅନୁବାଦକୁ ଦିଲ୍ଲୀକୁ ପଠାଯାଇଥିଲା। ଜଗନ୍ନାଥ ପ୍ରସାଦ ୧୯୭୩ ମସିହାରେ ଦିଲ୍ଲୀକୁ ଯିବାପରେ ୧୯୭୬ ମସିହାରେ ଏହାର ହିନ୍ଦୀ ଅନୁବାଦ 'ସୂର୍ଯ୍ୟାସ୍ତକ' ଦିଲ୍ଲୀର ଏକ ପ୍ରସିଦ୍ଧ ନାଟ୍ୟସଂସ୍ଥା 'ଦିଶାନ୍ତର'ଦ୍ୱାରା ମଞ୍ଚସ୍ଥ କରାଯାଇଥିଲା, ଯାହାର ନିର୍ଦ୍ଦେଶନା ଦେଇଥିଲେ ରାମ ଗୋପାଲ ବଜାଜ ଏବଂ ଏଥିରେ ଅଭିନୟ କରିଥିଲେ ଓମ୍ ପୁରୀ, ବେଦ ସିହ୍ନା, ମାଲା ମେହେରୋତ୍ରା ଓ ସୁଦେଶ ସୟାଲ ପ୍ରମୁଖ କଳାକାରମାନେ। ଏହି ନାଟକର ମୁଖ୍ୟ ଭୂମିକାରେ ଓମ୍ ପୁରୀଙ୍କର ବଳିଷ୍ଠ ଅଭିନୟ ପାଇଁ ଏହା ସବୁଠାରୁ ଅଧିକ ଚର୍ଚ୍ଚିତ ନାଟକ ଭାବରେ ବିବେଚିତ ହୋଇଥିଲା ସେତେବେଳେ। ହିନ୍ଦୀ ଅନୁବାଦ କାଳରେ ନାଟକର ନାମକରଣକୁ ନେଇ ପ୍ରଥମେ କିନ୍ତୁ ଦ୍ୱନ୍ଦ୍ୱ ଦେଖା ଦେଇଥିଲା। ଏହି ମର୍ମରେ ନିର୍ଦ୍ଦେଶକ ରାମ ଗୋପାଳ ବଜାଜଙ୍କର ସ୍ମୃତିଚାରଣକୁ ଏଠାରେ ଉଲ୍ଲେଖ କରାଯାଇପାରେ। ଏହି ସ୍ମୃତିଚାରଣଟି ତାଙ୍କର 'ନିର୍ଦ୍ଦେଶକକୀ ବକ୍ତବ୍ୟ' ଶିରୋନାମାରେ 'ସୂର୍ଯ୍ୟାସ୍ତ' (ହିନ୍ଦୀ ଅନୁବାଦ)ନାଟକ ପୁସ୍ତକର ମୁଖବନ୍ଧ ରୂପେ ସ୍ଥାନିତ ରହିଥିଲା। ସ୍ମୃତି ଚାରଣଟି ଏହିପରି ଯେ ଏହି ନାଟକର ମୂଳ ହିନ୍ଦୀ ଅନୁବାଦର ନାମ ଥିଲା 'ସାମ୍ ହୋନେସେ ପହଲେ'। ମାତ୍ର ମଞ୍ଚସ୍ଥ କାଳରେ ଶେଷରେ 'ସୂର୍ଯ୍ୟାସ୍ତ'ରେ ପହଞ୍ଚିଲା ବେଳକୁ 'ସୂର୍ଯ୍ୟାସ୍ତକ୍' ନାମଟି ଅଧିକ ରୋଚକ ବୋଲି ମନେ ହୋଇଛି। ମାତ୍ର ପ୍ରକାଶନ ବେଳେ ପ୍ରକାଶକ ଭାଷାଗତ ସୌନ୍ଦର୍ଯ୍ୟ ପାଇଁ ପୂର୍ବର 'ସୂର୍ଯ୍ୟାସ୍ତ'କୁ ହିଁ ଶେଷ ପର୍ଯ୍ୟନ୍ତ ଗ୍ରହଣ କରିନେଇଛନ୍ତି। ନାଟକଟି ମଞ୍ଚସ୍ଥ ହେବା ପରେ ରାମ ଗୋପାଲ ବଜାଜଙ୍କ ସ୍ତ୍ରୀ କମଲ କପୁର ଏହାର ଏକ ସମୀକ୍ଷା ପ୍ରସ୍ତୁତ କରିଥିଲେ। ନାଟକର ରିହରସେଲ ସମୟରେ ସେ ପ୍ରାୟ ସବୁବେଳେ କଳାକାରମାନଙ୍କ ସହିତ ରହୁଥିଲେ ଓ ସମସ୍ତଙ୍କୁ ଉତ୍ସାହ ପ୍ରଦାନ କରୁଥିଲେ। ଏହି ସମୟରେ ଜଗନ୍ନାଥ ପ୍ରସାଦ ମଞ୍ଚର ଅତ୍ୟନ୍ତ ନିକଟତର ହୋଇଥିଲେ ଓ ରଂଗମଞ୍ଚ ସଂପର୍କରେ ତାଙ୍କର ଅନୁଭୂତି ସୁଦୃଢ଼ ହୋଇଥିଲା, ଯାହାକି ତାଙ୍କର ପରବର୍ତ୍ତୀ ନାଟକ ରଚନା କାଳରେ ତାଙ୍କୁ ବହୁତ ପରିମାଣରେ ସାହାଯ୍ୟ କରିଥିଲା।

ଏହି ନାଟକଟି ମୂଳ ଓଡ଼ିଆରେ କିନ୍ତୁ ଅଭିନୀତ ହେଲା ୧୯୭୭ରେ ଇଣ୍ଟରନ୍ୟାସନାଲ ଥିଏଟର ଗ୍ରୁପ୍ଦ୍ୱାରା। ଓଡ଼ିଆ ନାଟକର ନିର୍ଦ୍ଦେଶକ ଥିଲେ ଗୋବିନ୍ଦ

ଗୁପ୍ତା ଓ କଳାକାରମାନେ ଥିଲେ ଦୀନେଶ ରାଉତ, ଜୟନ୍ତ ଦାସ, ଗୀତାରାଣୀ ଓ ବିଷ୍ଣୁପ୍ରିୟା। ଏବଂ ପରେ ପରେ ନାଟକଟି ୧୯୭୯ ମସିହାରେ ଉଭୟ କନ୍ନଡ ଓ ପଂଜାବୀ ଭାଷାରେ ମଧ୍ୟ ଅନୂଦିତ ହୋଇଥିଲା। କନ୍ନଡ଼ ଭାଷାରେ ଏହାର ଶିରୋନାମା ଥିଲା 'ହୋଙ୍ଗୁ ମୁଲଗୁଓ୍ୱା ମୁନ୍ନା' ଓ ତାହର ଅନୁବାଦକ ଥିଲେ କନ୍ନଡ ଭାଷାର ଅଧ୍ୟାପକ ପରମେଶ ଏବଂ ପଂଜାବୀ ଭାଷାରେ 'ଆଥାନଭେଲେ' ଶିରୋନାମାରେ ଅନୁବାଦ କରିଥିଲେ ଶ୍ରୀମତୀ ଜଗଜିତ୍ 'ଗଗନ' ଓ ତାହା ଚଣ୍ଡିଗଡ଼ରେ ମଞ୍ଚସ୍ଥ ହୋଇଥିଲା। ପରେ ପରେ ଏହି ନାଟକଟି ଗୁଜୁରାଟୀ ଭାଷାରେ ମଧ୍ୟ ଅନୂଦିତ ହୋଇ ବମ୍ବେ ଆକାଶବାଣୀରେ ପ୍ରସାରିତ ହୋଇଥିଲା।

'ସୂର୍ଯ୍ୟାସ୍ତ ପୂର୍ବରୁ' ନାଟକର କଥାବସ୍ତୁ ଥିଲା ଦୁଇଜଣ ପୁରୁଷ ଓ ଦୁଇଜଣ ସ୍ତ୍ରୀଙ୍କ ମାନସିକ ଅବସ୍ଥାର ଉପସ୍ଥାପନା। ସମାଲୋଚକ ସର୍ବେଶ୍ୱର ଦାସ ଯଥାର୍ଥରେ କହିଛନ୍ତି ଯେ, ଏହାର "କଥାଭାଗ ଅତ୍ୟନ୍ତ ଅକିଞ୍ଚିତକର। ଏଥିରେ କୌଣସି ଘଟଣା ଘଟୁନାହିଁ। ଯାହା ବା ଘଟୁଛି, ତାହା ବାହ୍ୟ ଜଗତର ନୁହେଁ। ନାଟକୀୟ ଚରିତ୍ରମାନଙ୍କ ମାନସ ପଟରେ। ଏହାକୁ ଏକ ଘଟଣାବିହୀନ ନାଟକ ବୋଲି କୁହାଯାଇପାରେ। ........... ନାଟକର ମୁଖ୍ୟ ଚରିତ୍ର ଦୀପଙ୍କର ଚାଳିଶ ବର୍ଷ ବୟସରେ ପଦାର୍ପଣ କରିଛି। ତା'ର ମନେ ହୋଇଛି ଯେ ତା' ଜୀବନରେ ସୂର୍ଯ୍ୟାସ୍ତ ଆଉ ବେଶୀ ବିଳମ୍ବ ନୁହେଁ। ତେଣୁ ସୂର୍ଯ୍ୟାସ୍ତ ପୂର୍ବରୁ ସେ ଜୀବନରେ ଜମାଖର୍ଚ୍ଚ ଫେଡ଼ି ଦେଖିବାକୁ ଇଚ୍ଛା କରିଛି।" ସେ ବୁଝାଇ ଦେଇଛନ୍ତି ଯେ ତା'ର ସେହି ଦୁରବସ୍ଥାପାଇଁ ସଂଜୟ, ସରୋଜ ଓ ଶୀଳା ହିଁ ହେଉଛନ୍ତି ଏକମାତ୍ର ଦାୟୀ। ଶେଷରେ ଦୀପଙ୍କରର ସମସ୍ତ ପ୍ରକାର ପ୍ରତିଜ୍ଞା କେବଳ ପ୍ରହସନରେ ପରିଣତ ହୋଇଛି। ଓଡ଼ିଆ ନାଟ୍ୟ ଆନ୍ଦୋଳନରେ ସତେ ଯେପରି ଏହା ଏକ ନୂତନ ଦିଗଦର୍ଶନ କରିଥିଲା, ଯାହା ଫଳରେ ସର୍ବଭାରତୀୟ ପରିପ୍ରେକ୍ଷୀରେ ଏହି ନାଟକଟି ବିଶେଷ ଭାବରେ ଲୋକାଦୃତ ହୋଇପାରିଥିଲା।

ଏହି ନାଟକ ପରେ ପରେ ଜଗନ୍ନାଥ ପ୍ରସାଦ ରଚନା କରିଛନ୍ତି 'ସବାଶେଷ ଲୋକ'। ଏହା 'ଏବଂ ଆମେ' ଦ୍ୱାରା ମଞ୍ଚସ୍ଥ କରାଯାଇଥିଲା ଓ ଏହାର ନାଟ୍ୟ ନିର୍ଦ୍ଦେଶନା ପ୍ରଦାନ କରିଥିଲେ ଧୀର ମଲ୍ଲିକ। ଆଉ ଯେଉଁମାନେ ଅଭିନୟ କରିଥିଲେ ସେମାନଙ୍କ ମଧ୍ୟରେ ଅନ୍ୟତମ କଳାକାର ଥିଲେ ଶିଳ୍ପୀ ଅସୀମ ବସୁ। ସେ ତାଙ୍କର ଅନୁଭୂତିକୁ ବର୍ଣ୍ଣନା କରିବାକୁ ଯାଇ କୁହନ୍ତି, "କ୍ଷମତା ପାଖରେ ବ୍ୟକ୍ତିତ୍ୱ କେମିତି ବନ୍ଧା ପଡ଼ିଯାଏ, ମୋର ପ୍ରଫେସର ଚରିତ୍ରରେ ଜେପି ତାକୁ ଦେଖାଇଛନ୍ତି। ସେହି

ବନ୍ଧା ନ ପଡ଼ିବାପାଇଁ ତ ମୁଁ ନିଜେ ଦିନେ ସରକାରୀ ଚାକିରି ଛାଡ଼ିଥିଲି। ତେଣୁ ସେ ଚରିତ୍ରଥିଲା ମୋର ବ୍ୟକ୍ତିଗତ ଚରିତ୍ରର ପ୍ରତିଲିପି।"। ଏହି ନାଟକଟି ଓଡ଼ିଆରେ ମଞ୍ଚସ୍ଥ ହେବା ପୂର୍ବରୁ ଦିଲ୍ଲୀରେ ହିନ୍ଦୀରେ ଅନୂଦିତ ହୋଇ ମଞ୍ଚସ୍ଥ ହୋଇଯାଇଥିଲା। ହିନ୍ଦୀ ଅନୁବାଦକୁ ପ୍ରସ୍ତୁତ କରିଥିଲେ ରବି ବାସୱାନି ଯେ କି ନାଟକକୁ ନିର୍ଦ୍ଦେଶନା ଦେବା ସହିତ ସେଥିରେ ପ୍ରଫେସର ଭୂମିକାରେ ଅଭିନୟ ମଧ୍ୟ କରିଥିଲେ। ଅବଶ୍ୟ ରବି ବାସୱାନିଙ୍କ ୧୯୭୯ରେ ତାହାର ନିର୍ଦ୍ଦେଶନା ଦେବା ପୂର୍ବରୁ ନାଟକଟିକୁ ୧୯୭୮ ମସିହାରେ ମନୋଜ ଭଟ୍ଟନାଗରଙ୍କ ଦ୍ୱାରା ନିର୍ଦ୍ଦେଶିତ ହୋଇ ସାରିଥିଲା। ଏହି ହିନ୍ଦୀ ନାଟକର ସମୀକ୍ଷା ପ୍ରସ୍ତୁତ କରିଥିଲେ ଜେ.ଏନ୍. କୌଶଲ, ଯାହାକି ଇଂରାଜୀ ପତ୍ରିକା 'ଏନାକ୍ଟ'ରେ ପ୍ରକାଶିତ ହୋଇଥିଲା। (ଏନାକ୍ଟ, ୧୯୭୭) ଜଗନ୍ନାଥ ପ୍ରସାଦଙ୍କର ଏହି ଦୁଇଗୋଟି ନାଟକ ଯଥାକ୍ରମେ କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର ଦ୍ୱାରା ୧୯୭୭ ମସିହା ଓ ୧୯୮୦ ମସିହାରେ ପ୍ରକାଶିତ ହୋଇଥିଲା।

ଜଗନ୍ନାଥ ପ୍ରସାଦଙ୍କ ତୃତୀୟ ନାଟକ 'ଅସଙ୍ଗତ ନାଟକ'ଟି ଧୀର ମଲ୍ଲିକଙ୍କ ନିର୍ଦ୍ଦେଶନାରେ ଭୁବନେଶ୍ୱରରେ ମଞ୍ଚସ୍ଥ କରାଯାଇଥିଲା ଏବଂ ଚତୁର୍ଥ ନାଟକ 'ସୁନ୍ଦର ଦାସ'ଟି ହେଉଛି ସବୁଠାରୁ ଚରିତ୍ର ବହୁଳ ନାଟକ, ଯାହାକି ଧର୍ମାନ୍ତରୀକରଣ ପ୍ରକ୍ରିୟାକୁ କେନ୍ଦ୍ରକରି ଗଢ଼ି ଉଠିଥିଲା। ଏଥିରେ ଚରିତ୍ର ସଂଖ୍ୟା ହେଉଛି ତିରିଶରୁ ଊର୍ଦ୍ଧ୍ୱ। ୨୦୦୭ ମସିହାରେ ଜବାହାରଲାଲ ନେହରୁ ବିଶ୍ୱବିଦ୍ୟାଳୟର ସ୍କୁଲ ଅଫ ଆର୍ଟ ଏଣ୍ଡ ଏସ୍ଥେଟେକି୍ସ ପକ୍ଷରୁ ଯେଉଁ ଦୁଇଟି ଆଧୁନିକ ଭାରତୀୟ ନାଟକ ମଞ୍ଚସ୍ଥ କରାଯାଇଥିଲା, ତନ୍ମଧ୍ୟରୁ ଏହି 'ସୁନ୍ଦର ଦାସ' ନାଟକଟି ଅନ୍ୟତମ। ଏହାର ମଞ୍ଚ ନର୍ଦ୍ଦେଶନା ଦେଇଥିଲେ ପ୍ରସିଦ୍ଧ କନ୍ନଡ କବି ଓ ନାଟ୍ୟକାର ଏଚ.ଏସ୍. ଶିବପ୍ରସାଦ। ଏହିପରି ଭାବରେ ଦେଖିବାକୁ ଗଲେ ଜଗନ୍ନାଥ ପ୍ରସାଦ ଆଧୁନିକ ଓଡ଼ିଆ ନାଟକ ଲେଖି ଓଡ଼ିଆ ନବନାଟ୍ୟ ଅନ୍ଦୋଳନରେ ଯେପରି ଅଂଶ ଗ୍ରହଣ କରି ଓଡ଼ିଆ ନାଟକକୁ ଏକ ଦିଗଦର୍ଶନ ପ୍ରଦାନ କରିଛନ୍ତି; ଅନୁରୂପ ଭାବରେ ଆମ ଓଡ଼ିଶାରେ ଓ ଓଡ଼ିଶାର ସୀମା ସରହଦ ଊର୍ଦ୍ଧ୍ୱରେ ଭାରତରେ ଓ ଆନ୍ତର୍ଜାତିକ ସ୍ତରରେ ବେଶ୍ ଖ୍ୟାତିଅର୍ଜନ କରିଛନ୍ତି। ତାଙ୍କର ନାଟକର ସଂଖ୍ୟା ଅତ୍ୟନ୍ତ ସ୍ୱଳ୍ପ; ଠିକ୍ ତାଙ୍କ କଥା କହିଲା ଭଳି। ମାତ୍ର ସ୍ୱଳ୍ପ ଭାଷଣ ମଧ୍ୟରେ ସେ ଯେପରି ଅନେକ କିଛି କଥା ଶ୍ରୋତା ବା ପାଠକଙ୍କ ପାଇଁ ଛାଡ଼ି ଯାଆନ୍ତି; ଠିକ୍ ସେହିପରି ତାଙ୍କର ସ୍ୱଳ୍ପ ନାଟକ ନାଟ୍ୟଜଗତ ପାଇଁ ଅଜସ୍ର ଖୋରାକ୍ ଯେ ଯୋଗାଇ ଦେଇଗଲା କହିଲେ ଆଦୌ ଅତ୍ୟୁକ୍ତି ହେବନାହିଁ।

ଜଗନ୍ନାଥ ପ୍ରସାଦ କେବଳ ନାଟକ ଲେଖି ନାହାନ୍ତି, ନାଟକ ସହିତ ଅଭିନୟ ଜଗତ ସହିତ ନିଜକୁ କିଛି ସମୟପାଇଁ ଜଡ଼ିତ ରଖିଛନ୍ତି। ମୁହଁରେ ରଂଗମାଖି ସିଧା ମଞ୍ଚକୁ ମଧ୍ୟ ସେ ଓହ୍ଲାଇଛନ୍ତି। ତାଙ୍କର ଅଭିନୟ ଜୀବନ ଆରମ୍ଭ ହୋଇଥିଲା ଭୁବନେଶ୍ୱରରେ; ନିଜ ନାଟକ 'ଜଣେ ଜଣକପାଇଁ' ମାଧ୍ୟମରେ। ପରେ ପରେ ସେ ନିଜର ଅଭିନୟକୁ ସଂପ୍ରସାରିତ କରିଛନ୍ତି, ମନୋରଂଜନ ଦାସଙ୍କ ନାଟକ 'ବକ୍ସି ଜଗବନ୍ଧୁ'ରେ 'ଫତେ ଅହମ୍ମଦ' ଭୂମିକାଠାରୁ ଆରମ୍ଭ କରି ଏସ୍. ଏନ୍. ଧୀରଙ୍କ ନିର୍ଦ୍ଦେଶିତ ଚଳଚ୍ଚିତ୍ର 'ସୁନୟନା' ଓ ରବି ବାସୱାନିଙ୍କ ନିର୍ଦ୍ଦେଶିତ ଟେଲିଫିଲ୍ମ 'ପଞ୍ଝୀ' ପରି କେତୋଟି ଟେଲିଫିଲ୍ମରେ ମଧ୍ୟ ସେ ଅଭିନୟ କରିଛନ୍ତି।

ନାଟକ ଓ ରଂଗମଞ୍ଚ ସହିତ ନାଟ୍ୟାଭିନୟ ଦିଗରେ ତାଙ୍କର ଆଗ୍ରହ ପରବର୍ତ୍ତୀ କାଳରେ ସିନେମା ଦିଗକୁ ତାଙ୍କୁ ଆକର୍ଷିତ କରିଛି। ସେ ଭୁବନେଶ୍ୱର ଓ ଦିଲ୍ଲୀ ଫିଲ୍ମ ସୋସାଇଟି ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ। ସେହି କାରଣରୁ ସେ ଯେତେବେଳେ ଶିଳ୍ପ ବିଭାଗର ନିର୍ଦ୍ଦେଶକ ଭାବରେ କାର୍ଯ୍ୟ କରୁଥିଲେ, ସେତେବେଳେ ସେ ବମ୍ବେ ଷ୍ଟୁଡିଓକୁ ଯାଇ ତାହାର କଳା-କୌଶଳକୁ ପରିଦର୍ଶନ କରିଥିଲେ। ସେତେବେଳେ ତାଙ୍କ ସହିତ ଥିଲେ ଲୋକ ସଂପର୍କ ବିଭାଗର ନିର୍ଦ୍ଦେଶକ ଏଚ.ଏନ୍. ଦାସ ମହାପାତ୍ର ଓ ଏକ୍ସପ୍ରେସ ସମ୍ବାଦପତ୍ରର ପତ୍ରକାର ପି.ଏସ୍. ହେଗଡ଼େ। ବମ୍ବେ ଷ୍ଟୁଡିଓରେ ସେତେବେଳେ 'ମେହେବୁବ୍ କି ମେହେନ୍ଦି'ର ସୁଟିଂ କାର୍ଯ୍ୟ ସଂପନ୍ନ ହେଉଥିଲା। ସେହି କାରଣରୁ ସେଠାରେ ମଧ୍ୟ ଥିଲେ ଖ୍ୟାତନାମା ଚଳଚ୍ଚିତ୍ର ଅଭିନେତା ରାଜେଶ ଖାନ୍ନା ଓ ପ୍ରଯୋଜକ-ନିର୍ଦ୍ଦେଶକ ଏଚ୍.ଏସ୍. ରାୱାଇଲ। ସେତେବେଳେ ଜଗନ୍ନାଥ ପ୍ରସାଦ ଓଡ଼ିଶାରେ ସେହିଭଳି ଏକ ଷ୍ଟୁଡିଓ ଓ ଲ୍ୟାବୋରାଟୋରୀର ଆବଶ୍ୟକତାକୁ ଅନୁଭବ କରି ଓଡ଼ିଶା ସରକାରଙ୍କୁ ନିଜର ରିପୋର୍ଟ ମାଧ୍ୟମରେ ତାହାର ସୂଚନା ପ୍ରଦାନ କରିଥିଲେ। ଜେପି ଓଡ଼ିଶା ଫିଲ୍ମ ଡେଭେଲୋପମେଣ୍ଟ କର୍ପୋରେସନର ବୋର୍ଡରେ କାର୍ଯ୍ୟ କରିବା ସହିତ ୧୯୮୫ ମସିହାରେ ସେ ଚିଲଡ୍ରେନ୍ସ ଫିଲ୍ମ ସୋସାଇଟି ଅଫ୍ ଇଣ୍ଡିଆର ସଦସ୍ୟ ଭାବରେ କାର୍ଯ୍ୟ କରିଥିଲେ, ଯେଉଁଥିରେ ଅନ୍ୟତମ ସଦସ୍ୟ ରହିଥିଲେ ପ୍ରସିଦ୍ଧ ଗଜଲ ରଚୟିତା ତଥା ହିନ୍ଦୀ ଚଳଚ୍ଚିତ୍ରର ଗୀତିକାର ଗୁଲଜାର। ଏହିଠାରେ ଗୁଲଜାରଙ୍କ ସହିତ ତାଙ୍କର ସଂପର୍କ ଅତ୍ୟନ୍ତ ଘନିଷ୍ଠ ହୋଇଉଠେ। ସୋସାଇଟିର ସଭାକାର୍ଯ୍ୟ ପରେ ସେମାନେ ବାହାରେ କବିତାଆସର କରି ସମୟ ଅତିବାହିତ କରୁଥିଲେ। ସେହିକ୍ରମରେ ଜେପି ଗୁଲଜାରଙ୍କୁ କବିତା ଲେଖିବାପାଇଁ ପ୍ରବର୍ତ୍ତାନ୍ତି ଓ ଗୁଲଜାର ମଧ୍ୟ ଚଳଚ୍ଚିତ୍ର ପାଇଁ

ଗୀତ ରଚନା କରିବା ସହିତ କବିତା ଲେଖିବାରେ ମନୋନିବେଶ କରନ୍ତି। ଦୁହେଁ ମିଶି ସେହି ନୂତନ ଉର୍ଦ୍ଦୁ କବିତାର ଇଂରାଜୀ ଅନୁବାଦ ମଧ୍ୟ ପ୍ରସ୍ତୁତ କରିଛନ୍ତି 'Autumn Moon' ଶିରୋନାମାରେ, ଯାହାକି ୧୯୯୯ରେ ପ୍ରକାଶିତ ହୋଇଥିଲା। ଜେପି ସେହି ସ୍ମୃତିକୁ ମନେ ପକାଇ ଲେଖିଛନ୍ତି, "ତାଙ୍କ ସହିତ ମିଶି ତାଙ୍କର କବିତାର ଅନୁବାଦ କରିବା ଏକ ପ୍ରୀତିକର ଅନୁଭବ ଥିଲା" ଅନ୍ୟପକ୍ଷରେ ଗୁଲଜାର ତାଙ୍କ ଚିଠିରେ ମଧ୍ୟ ଜେପିଙ୍କ ମହାନତାକୁ ସ୍ୱୀକାର କରି ଲେଖନ୍ତି, "Why have you stoped educating me? There is no letter, no story, no poem from you!" ଏହାଛଡ଼ା ସେହି ୧୯୮୫ ମସିହାରେ ବାଙ୍ଗାଲୋରଠାରେ ଅନୁଷ୍ଠିତ ହୋଇଥିବା ଶିଶୁ ଚଳଚ୍ଚିତ୍ର ମହୋତ୍ସବରେ ସେ ଆନ୍ତର୍ଜାତିକ ଜୁରିର ସଭାପତିତ୍ୱ କରିଥିଲେ। ପରବର୍ତ୍ତୀ ପର୍ଯ୍ୟାୟରେ ତାଙ୍କରି ଉଦ୍ୟମରେ ଭୁବନେଶ୍ୱରରେ ଶିଶୁ ଚଳଚ୍ଚିତ୍ର ଉତ୍ସବର ଆୟୋଜନ ହୋଇ ପାରିଥିଲା। ଏହି ଉତ୍ସବରେ ସେ ଏକ ସେମିନାରର ଆୟୋଜନ କରିଥିଲେ ଓ ସେହି ସେମିନାରର ନିଷ୍କର୍ଷକୁ ନେଇ ୧୯୮୭ ମସିହାରେ 'ଫିଲ୍ମସ୍ ଫର୍ ଚିଲଡ୍ରେନ୍' ନାମକ ଗ୍ରନ୍ଥଟି ତାଙ୍କରି ସଂପାଦନାରେ ହିଁ ପ୍ରକାଶିତ ହୋଇଥିଲା। ୧୯୮୯ ମସିହାରେ 'ଇଣ୍ଟରନ୍ୟାସନାଲ ଚିଲଡ୍ରେନ୍ ଫେଷ୍ଟିଭାଲ'ର ଜୁରିର ସେ ଥିଲେ ସଭାପତି ଓ ୧୯୯୦ ମସିହାରେ ସେ ଫିନଲ୍ୟାଣ୍ଡଠାରେ ଅନୁଷ୍ଠିତ ହେଉଥିବା ଶିଶୁ ଚଳଚ୍ଚିତ୍ର ମହୋତ୍ସବରେ ସେ ଥିଲେ ତାହାର ବିଚାରକ ମଣ୍ଡଳୀର ଅନ୍ୟତମ ସଦସ୍ୟ। ଏହାଛଡ଼ା ସେ ଅନେକଥର ଜାତୀୟ ଚଳଚ୍ଚିତ୍ର ପୁରସ୍କାର ମନୋନୟନ କମିଟିର ସଭ୍ୟ ଭାବରେ କାର୍ଯ୍ୟ କରିଛନ୍ତି ଓ ଦୂରଦର୍ଶନର ସ୍କ୍ରିପ୍ଟ ସିଲେକ୍ସନ କମିଟି ସହିତ ମଧ୍ୟ ଜଡ଼ିତ ରହିଛନ୍ତି। ଓଡ଼ିଆ ନବନାଟ୍ୟ ଆନ୍ଦୋଳନରେ ତାଙ୍କର ସକ୍ରିୟ ଭୂମିକା ତାଙ୍କୁ ନାଟ୍ୟଜଗତ କ୍ଷେତ୍ରରେ ସବୁ ସମୟପାଇଁ ଅବିସ୍ମରଣୀୟ ହୋଇ ରହିବ। ସେହିସବୁ କୃତି ପାଇଁ କଲିକତାର ନାଟ୍ୟଜଗତ ତାଙ୍କୁ ୨୦୦୦ ମସିହାରେ 'ନାନ୍ଦିକାର' ସମ୍ମାନରେ ସମ୍ମାନିତ କରି ନିଜକୁ ଗୌରବାନ୍ୱିତ ମନେ କରିଛି।

ଜଗନ୍ନାଥ ପ୍ରସାଦଙ୍କର କେତୋଟି ଗଳ୍ପ ମଧ୍ୟ ନାଟ୍ୟାନୁବାଦରେ ଟେଲିଫିଲ୍ମ ରୂପ ଗ୍ରହଣ କରିଛି। ସେଗୁଡ଼ିକ ମଧ୍ୟରେ 'ସାକ୍ଷାତ୍‌କାର' ଓ 'ଲୋକସଂସ୍କୃତି' ହେଉଛି ଅନ୍ୟତମ। 'ଲୋକସଂସ୍କୃତି' ଟେଲିଫିଲ୍ମରେ ଅଭିନେତା ମିହିର ଦାସଙ୍କ ଅଭିନୟ ଏକାନ୍ତ ଜୀବନ୍ତ ଓ ମର୍ମସ୍ପର୍ଶୀ। ଅନ୍ୟପକ୍ଷରେ ଆମର ଲୋକ ସଂସ୍କୃତିରେ ରହିଥିବା 'ବାଘନାଚ'କୁ କିପରି ପାଶ୍ଚାତ୍ୟ ଜଗତକୁ ଆକର୍ଷିତ କରିବାପାଇଁ ଗାଁ'ର ଗୋପାଳ

ଛଳନାର ଆଶ୍ରୟ ନେଇ ନୃତ୍ୟଗୁରୁ ଭାବରେ ନିଜକୁ ପ୍ରତିଷ୍ଠିତ କରାଇଛି ଓ 'ବ୍ୟାଘ୍ର ନୃତ୍ୟ ପ୍ରତିଷ୍ଠାନ' ମାଧ୍ୟମରେ ନୃତ୍ୟଶିକ୍ଷା ପ୍ରଦାନ କରୁଛି, ତାହାର ଚିତ୍ର ଏହି ଟେଲିଫିଲ୍ମରୁ ବା ଗଳ୍ପରୁ ମିଳିଥାଏ। ଅନ୍ୟପକ୍ଷରେ ଲେଖକ ଏଥିରେ ଉଲ୍ଲେଖ କରିଥିଲେ ଯେ ତାଙ୍କ ଗାଁ ଆଉ ରଘୁ ଚୌକିଦାରର ଗାଁ ନ ହୋଇ ନୃତ୍ୟର ଆନ୍ତର୍ଜାତିକ କଳା କ୍ଷେତ୍ର। ଗାଁ'ର ସୌନ୍ଦର୍ଯ୍ୟ ହଜି ଯାଇଥିଲା ଓ ତାହାକୁ ଅଧିକାର କରିଥିଲା ପାଶ୍ଚାତ୍ୟ ଦେଶର ଯୁବକ-ଯୁବତୀଙ୍କର ହାବଭାବ। ଗଳ୍ପ ଓ ଗଳ୍ପର ନାଟ୍ୟରୂପାନ୍ତର ବେଶ ମନେପକାଇ ଦିଏ ପୁରୀର ରଘୁରାଜପୁର ଗାଁ'କୁ। ଯେତେବେଳେ ଜଗନ୍ନାଥ ପ୍ରସାଦ ସେଠାକୁ ଯାଇଥିଲେ ନିଜର ଗବେଷଣା ପାଇଁ, ସେତେବେଳେ ତାହା ଥିଲା ଏକାନ୍ତ ଅଗମ୍ୟ ଓ ଅଖ୍ୟାତ। ମାତ୍ର ଆଜି ସେ ସ୍ଥାନ 'କଲ୍ଚ ଭିଲେଜ ରଘୁରାଜପୁର' ଭାବରେ ଖ୍ୟାତି ଲାଭ କରିବା ସହିତ ସମଗ୍ର ବିଶ୍ୱପାଇଁ ଚିତ୍ରକଳାର ଏକ ତୀର୍ଥସ୍ଥାନରେ ପରିଣତ ହୋଇଅଛି।

ଏତଦ୍ ବ୍ୟତୀତ ଜଗନ୍ନାଥ ପ୍ରସାଦ ଥିଲେ ଉତ୍କଳ ରଂଗମଞ୍ଚ ଟ୍ରଷ୍ଟ, ଭୁବନେଶ୍ୱରର ଅନ୍ୟତମ ଟ୍ରଷ୍ଟି ଓ ଦିଲ୍ଲୀର 'ନ୍ୟାସନ୍ୟାଲ ସ୍କୁଲ ଅଫ ଡ୍ରାମା' ସଂସ୍ଥାର କାର୍ଯ୍ୟକାରୀ ସଭ୍ୟ ଓ ଉପ ସଭାପତି। ଏପରି କି ସେ ଇଣ୍ଟରନ୍ୟାସନାଲ ଥିଏଟର ଗ୍ରୁପ୍‌ର ଅନ୍ୟତମ ସଭ୍ୟ ଭାବରେ ନବନାଟ୍ୟ ଆନ୍ଦୋଳନର ବିଭିନ୍ନ ତଥ୍ୟ ସହିତ ତାହାର କଳା ଓ ମଞ୍ଚ ଦିଗକୁ ନିରୀକ୍ଷଣ କରିବାକୁ ସ୍ୱିଡେନ ଓ ସୋଭିଏତ୍ ରୁଷ ଯାତ୍ରା କରି ଓଡ଼ିଆ ନବନାଟ୍ୟ ଆନ୍ଦୋଳନକୁ ପୁଷ୍ଟ କରିବାରେ ଯେଉଁ ଗୁରୁ ଦାୟିତ୍ୱ ସଂପନ୍ନ କରିଥିଲେ, ସେଥିପାଇଁ ଓଡ଼ିଆ ନାଟ୍ୟ ସାହିତ୍ୟ ତାଙ୍କୁ ଚିରଦିନ ପାଇଁ ମନେ ରଖିବ ନିଶ୍ଚୟ।

## ଶବ୍ଦ ଏବଂ ଭବନାଥ କାହିଁକି ପାଗଳ ହୋଇଗଲା : ଧମକର ପ୍ରତିସ୍ପର୍ଦ୍ଧା ମାଧ୍ୟମରେ ଗଳ୍ପ ସାମ୍ରାଜ୍ୟରେ ଆଧିପତ୍ୟ

ଜଗନ୍ନାଥ ପ୍ରାସଦଙ୍କର ପ୍ରଥମ ଗଳ୍ପ ହେଉଛି, 'ଶବ୍ଦ ଏବଂ ଭବନାଥ କାହିଁକି ପାଗଳ ହୋଇଗଲା'। ଏହି ଗଳ୍ପଟି 'ସମାବେଶ' ପତ୍ରିକାରେ ପ୍ରଥମେ ପ୍ରକାଶ ପାଇଥିଲା, ୧୯୮୦ ମସିହାର ପୂଜାସଂଖ୍ୟାରେ। ଏହି ଗଳ୍ପ ପଛରେ କିନ୍ତୁ ରହିଛି ଦୁଇଟି ରହସ୍ୟପୂର୍ଣ୍ଣ ତଥା ପ୍ରୀତିପ୍ରଦ କାହାଣୀ। କଥାଟି ହେଉଛି ଏହିପରି। ପ୍ରଥମଟି ହେଉଛି ଯେ ଜଗନ୍ନାଥ ପ୍ରସାଦଙ୍କ ସହିତ ଆମ ଭାରତୀୟ ସାହିତ୍ୟ ତଥା ସିନେମା ଜଗତର ଅନେକ ନାମୀ ଦାମୀ କଳାକାରଙ୍କ ସହିତ ଅତ୍ୟନ୍ତ ଘନିଷ୍ଠ ସଂପର୍କ ରହିଛି। ଏହି ସୂତ୍ରରେ ହିନ୍ଦୀ ଉପନ୍ୟାସ ସାହିତ୍ୟର ଅନ୍ୟତମ ପଥିତଯଶା ଔପନ୍ୟାସିକ ମୁଲକରାଜ୍ ଆନନ୍ଦଙ୍କ ସହିତ ଏକ ସାଧାରଣ ପରିଚୟରୁ ସଂପର୍କ ଘନିଷ୍ଠ ହୋଇ ସାରିଥିଲା ଜଗନ୍ନାଥ ପ୍ରସାଦଙ୍କର। ସେ ଯେତେବେଳେ ବମ୍ବେରୁ ଦିଲ୍ଲୀ ଆସୁଥିଲେ ସେତେବେଳେ ତାଙ୍କର 'ଲୋକାୟତ' ବସାରେ ପ୍ରାୟ ନିୟମିତ ସାକ୍ଷାତ ହେଉଥିଲା ଜେପିଙ୍କ ସହିତ। ସେତେବେଳେ ପ୍ରୀତୀଶ ନନ୍ଦୀ, ମୁଲକରାଜ ଆନନ୍ଦ ଓ ଆର୍ଣ୍ଣଲଡ ହାଇନେମାନ ପ୍ରକାଶନ ସଂସ୍ଥାର ପ୍ରକାଶକ ଗୁଲାବ ଓ୍ୱାଜିରାନିଙ୍କ ମଧ୍ୟରେ ଏକ ସାରସ୍ୱତ ଖଟି ଜମୁଥିଲା। ପ୍ରୀତୀଶ ନନ୍ଦୀ ଓ ଜଗନ୍ନାଥ ପ୍ରସାଦ ଉଭୟେ ସେତେବେଳେ ମୁଲକରାଜ ଆନନ୍ଦଙ୍କୁ ଅଂକଲ ବୋଲି ଡାକୁଥିଲେ। ସେମାନେ ଯିଏ ଯାହା ଲେଖୁଥିଲେ ତା'ର ପାଣ୍ଡୁଲିପିକୁ ସେମାନଙ୍କ ମଧ୍ୟରେ ଆଦାନପ୍ରଦାନ କରାଯାଉଥିଲା ଓ ସେ ସଂପର୍କରେ ମତାମତ ଲୋଡ଼ା ଯାଉଥିଲା। ଏହି କ୍ରମରେ

ମୁଲକରାଜ ଆନନ୍ଦ ତାଙ୍କର ଏକ ଉପନ୍ୟାସ ପଢ଼ିବାପାଇଁ ଦେଇଥିଲେ ଜଗନ୍ନାଥଙ୍କୁ। ସେ ଲେଖିଥିଲେ, "And if the incidental impact of the novel has made you turn from time to time from poetry to prose, this is a welcome decision and I will claim credit for some part of your conversion. If only by saying that you were so bored with my book , that you thought you could be better."। ଅର୍ଥାତ ସେ ମୁଲକରାଜ ଆନନ୍ଦଙ୍କର ଉପନ୍ୟାସ ପଢ଼ି ଏତେ କ୍ଲାନ୍ତ ହୋଇ ପଡ଼ିଲେ ଯେ ସେ ଭାବିଲେ ତାଙ୍କଠାରୁ ମଧ୍ୟ ଭଲ କାହାଣୀ ସେ ଲେଖିପାରିବେ। କାରଣ ମୁଁ ପୂର୍ବରୁ କହିଛି ଯେ ଜଗନ୍ନାଥ ପ୍ରସାଦ ହେଉଛନ୍ତି ଅତ୍ୟନ୍ତ ଅନ୍ତର୍ମୁଖୀ। ପ୍ରଶଂସା କଲା ବେଳେ ସେ ଶତମୁଖର, ହେଲେ ତାଙ୍କ ମନରେ ଯଦି ଗ୍ଲାନି ଆସିଲା ସେ ତା' ପ୍ରତି ବଦଳରେ କ'ଣ ହୋଇ ପାରିଥାନ୍ତା, ତାକୁ ନେଇ ସେ କିଛି କାର୍ଯ୍ୟରେ କରି ପ୍ରକାଶ କରିଥାନ୍ତି। କାରଣ ସେ ତାଙ୍କ କୃତିରେ ଯେତେ ବହିର୍ମୁଖୀ ବୋଧେ ଅନ୍ୟ କେଉଁଠାରେ ନୁହନ୍ତି।

ଅନ୍ୟ ଘଟଣାଟି ହେଉଛି ଆହୁରି ଚମକପ୍ରଦ ତଥା ଏକାନ୍ତ ମନଛୁଆଁ। ଆମ ଓଡ଼ିଆ ସାହିତ୍ୟର ଅନ୍ୟତମ ଶ୍ରଦ୍ଧେୟ କଥାଶିଳ୍ପୀ ଶ୍ରୀ ଅଖିଳ ମୋହନ ପଟ୍ଟନାୟକଙ୍କ ସହିତ ଜଗନ୍ନାଥ ପ୍ରସାଦଙ୍କର ସଂପର୍କ ବହୁଦିନରୁ ଅର୍ଥାତ୍ କଲେଜ ଷ୍ଟୁଡେଣ୍ଟସ ଫେଡେରେଶନ ଦିନରୁ। ଯେତେବେଳେ ଜଗନ୍ନାଥ ପ୍ରସାଦଙ୍କର ପ୍ରଥମ କବିତା ସଂକଳନ 'ପ୍ରଥମ ପୁରୁଷ' ପ୍ରକାଶ ପାଇଲା, ସେତେବେଳେ ଅଖିଳ ମୋହନ ପଟ୍ଟନାୟକ ଜେପିଙ୍କୁ କହିଥିଲେ ଯେ ସେ ଯଦି କବି ହୋଇଥାନ୍ତେ ତେବେ ନିଶ୍ଚିତ ଭାବରେ ତାଙ୍କୁ ଈର୍ଷା କରିଥାନ୍ତେ। ଏହି କଥାର ପ୍ରତ୍ୟୁତ୍ତରରେ ଜେପି କହିଥିଲେ ଯେ ସେ ଦିନେ ଗଳ୍ପ ଲେଖିବେ ଓ ସେତେବେଳେ ସେ ତାଙ୍କୁ ଈର୍ଷା କରୁଛନ୍ତି କି ନାହିଁ ଜଣାପଡ଼ିବ। ଏହି କଥୋପକଥନ ଅଖିଳଙ୍କ ପ୍ରାଣରେ ବାନ୍ଧି ହୋଇ ରହିଗଲା ଯେମିତି। ସେହି କାରଣରୁ ସେ ସବୁବେଳେ ଜେପିଙ୍କୁ ପଚାରୁଥିଲେ ଯେ ସେ ତାଙ୍କୁ ଯେଉଁ ଧମକ୍ ଦେଇଥିଲେ ଗଳ୍ପ ଲେଖିବେ ବୋଲି ତାହା କେବେ ପୂରଣ କରିବେ? ସେହିଭଳି ଏକ ଚିଠି ମଧ୍ୟ ରହିଛି 'ପ୍ରିୟ ଜେପି' ପୁସ୍ତକର ୧୦୬ ପୃଷ୍ଠାରେ। ସେଥିରେ ସେ ଜେ.ପି.ଙ୍କୁ ଲେଖିଛନ୍ତି, "ପୂଜା ପାଇଁ କବିତାଟିଏ (ବା' ଧମକ୍ ଦଉଥିବା ଗଳ୍ପଟିଏ) ପଠାଇବ।" ଶେଷରେ ବନ୍ଧୁ ଜଗନ୍ନାଥ ପ୍ରସାଦ ନିଜର ପ୍ରତିଶ୍ରୁତି ରଖିଲେ ଓ ତାଙ୍କୁ ନିଜର "ଶବ୍ଦ ଏବଂ ଭବନାଥ କାହିଁକି ପାଗଳ ହୋଇଗଲା" ଶୀର୍ଷକ ଗଳ୍ପଟିକୁ ତାଙ୍କର 'ସମାବେଶ' ପତ୍ରିକା ପାଇଁ ପଠାଇଲେ। ଏହି ଗଳ୍ପଟି ସେ ବର୍ଷର ଅତ୍ୟନ୍ତ ଚର୍ଚ୍ଚିତ ଗଳ୍ପ ଥିଲା ବୋଲି ଲେଖକ ମନୁ ଦାଶ

ନିଜର ସ୍ମୃତି ଚାରଣରେ ପ୍ରକାଶ କରିଛନ୍ତି ସେତେବେଳର ଅନୁପମ ଭାରତରେ। ଏହା ପରେ ପରେ ଜଗନ୍ନାଥ ପ୍ରସାଦ ସେହି ସମାବେଶରେ ଅନେକ ଗଳ୍ପ ଲେଖିଛନ୍ତି ଓ ଗଳ୍ପସାମ୍ରାଜ୍ୟରେ ନିଜକୁ ପ୍ରତିଷ୍ଠା କରିଛନ୍ତି ତାଙ୍କର ପ୍ରଥମ ଗଳ୍ପ ସଂକଳନ 'ଭବନାଥ ଓ ଅନ୍ୟମାନେ' ମାଧ୍ୟମରେ, ୧୯୮୨ ମସିହାରେ; ପ୍ରଥମ ଗଳ୍ପ ରଚନାର ଦୁଇବର୍ଷ ମଧ୍ୟରେ। ଏହି ଗଳ୍ପ ସଂକଳନଟିର ପ୍ରଥମ ଗଳ୍ପ 'ଶବ୍ଦଭେଦ' ହିଁ ହେଉଛି ବାସ୍ତବରେ ତାଙ୍କର ପ୍ରଥମ ଗଳ୍ପ 'ଶବ୍ଦ ଏବଂ ଭବନାଥ କାହିଁକି ପାଗଳ ହୋଇଗଲା'। କୌଣସି କାରଣରୁ ସଂକଳନରେ ସ୍ଥାନିତ କଲାବେଳକୁ ଗଳ୍ପର ଶୀର୍ଷକକୁ ବୋଧହୁଏ ସେ ସଂକ୍ଷିପ୍ତ କରି ଦେଇଛନ୍ତି। ଏମିତି ତ ଦେଖିବାକୁ ଗଲେ ତାଙ୍କର କବିତାଠାରୁ ଆରମ୍ଭ କରି ନାଟକ ବା ପ୍ରଥମ ଗଳ୍ପର ପରବର୍ତ୍ତୀକାଳୀନ ପ୍ରତ୍ୟେକଟି ଗଳ୍ପର ଶୀର୍ଷକ ଅତ୍ୟନ୍ତ କ୍ଷୁଦ୍ର ଓ ଏକାନ୍ତ ହୃଦୟସ୍ପର୍ଶୀ। ତେବେ ପ୍ରଥମ ଗଳ୍ପର ଶିରୋନାମାକୁ ସେ ଏତେ ବଡ଼ ରଖିଲେ କାହିଁକି ? ଏହିଭଳି ପ୍ରଶ୍ନଟିଏ ଯେତେବେଳେ ମନରେ ଉଙ୍କିମାରେ, ସେତେବେଳେ ମନେପଡ଼େ ସେହି ୧୯୮୦ ମସିହାର ଏକ ବହୁଚର୍ଚ୍ଚିତ ଚଳଚ୍ଚିତ୍ର, ଯେଉଁ ଚଳଚ୍ଚିତ୍ରରେ ଅଭିନୟ କରିଥିଲେ ଜଗନ୍ନାଥ ପ୍ରସାଦଙ୍କ ନାଟକ 'ସୂର୍ଯ୍ୟାସ୍ତକ୍'ର ଅଭିନେତା ଓମ୍ ପୁରୀ। ଚଳଚ୍ଚିତ୍ରଟି ହେଉଛି "ଅଲବର୍ଟ ପିଣ୍ଟୋକୋ ଗୁସ୍ସା କ୍ୟୋଁ ଆତା ହୈ"। ଅନାନ୍ୟ କଳାକାର ଭାବରେ ସେଥିରେ ଥିଲେ ନାସିରୁଦ୍ଦିନ ଶାହ ଓ ତାଙ୍କମାନଙ୍କ ସହିତ ଥିଲେ ଶବାନା ଆଜମୀ ଓ ସ୍ମିତା ପାଟିଲ। ଚଳଚ୍ଚିତ୍ରର କାହାଣୀରେ ମଧ୍ୟ ସେହିପରି ଏକ ଅତ୍ୟନ୍ତ ସ୍ପର୍ଶକାତର ତଥା ସମ୍ବେଦନଶୀଳ ବିଷୟବସ୍ତୁ ରହିଥିଲା। ସମ୍ଭବତଃ ଜଗନ୍ନାଥ ପ୍ରସାଦ ଯେତେବେଳେ ଗଳ୍ପ ଲେଖିବାକୁ ଉଦ୍ୟମ କରିଛନ୍ତି ସେତେବେଳେ ସେହିପରି ତାଙ୍କର ଏକ ସ୍ପର୍ଶକାତର ତଥା ସମ୍ବେଦନଶୀଳ ଅନୁଭୂତିକୁ ନେଇ, ଯାହାକୁକି ସେ ସବୁବେଳେ ପ୍ରାୟ ପାଠକମାନଙ୍କଠାରୁ ଭୋଗୁଥିବେ। ତାହା ହେଉଛି, 'କବିତାର ସଂଜ୍ଞା କ'ଣ ହେବା ଉଚିତ ?' ଓ 'କବିତାରେ କ'ଣ କୁହାଯାଇଛି ?' ପରି ଅନେକ ପ୍ରଶ୍ନ। ଯେଉଁସବୁ ପ୍ରଶ୍ନର ସମାଧାନ କରିବାକୁ ଉଦ୍ୟମ କରିଛି କବି ଭବନାଥ ସେହି ପ୍ରଥମ ଗଳ୍ପ 'ଶବ୍ଦ ଏବଂ ଭବନାଥ କାହିଁକି ପାଗଳ ହୋଇଗଲା'ର କାହାଣୀରେ।

ଏହି ପ୍ରଥମ ଗଳ୍ପ ସଂକଳନ 'ଭବନାଥ ଓ ଅନ୍ୟମାନେ'ରେ ସ୍ଥାନିତ ରହିଥିବା ୧୨ଟି ଗଳ୍ପରେ ମଧ୍ୟ ରହିଛି ସେହି ପ୍ରଥମ ପୁରୁଷର 'ମୁଁ'। ଲେଖକ ପ୍ରତ୍ୟେକଟି ଗଳ୍ପରେ କାହାରି ନା କାହାରି ସହିତ କଥୋପକଥନ କରୁଛନ୍ତି ନହେଲେ ସେ ନିଜେ କିଛି କଥା ପ୍ରକାଶ କରୁଛନ୍ତି। କେବଳ ଏହି ସଂକଳନ ନୁହେଁ, ପରବର୍ତ୍ତୀ

କାଳର ସମସ୍ତ ଗଳ୍ପ ସଂକଳନରେ ସେ ନିଜେ ହିଁ ପ୍ରତ୍ୟେକଟି ଗଳ୍ପରେ ଆସି ଉପସ୍ଥିତ ହୋଇଛନ୍ତି  ପ୍ରତ୍ୟକ୍ଷ ଭାବରେ। ଜଗନ୍ନାଥ ପ୍ରସାଦଙ୍କର ପରବର୍ତ୍ତୀକାଳୀନ ଗଳ୍ପ ସଂକଳନ ଗୁଡ଼ିକ ହେଉଛି: ଦିନଚର୍ଯ୍ୟା (୧୯୮୩), ଆମେ ଯେଉଁମାନେ (୧୯୮୬), ସାକ୍ଷାତକାର (୧୯୮୭), ପ୍ରିୟ ବିଦୂଷକ (୧୯୯୨) , ଆଖି ଇନ୍ଦ୍ରଧନୁ ଓ କବିତାର ଦୀର୍ଘ ଜୀବନ (୨୦୦୯) ପ୍ରଭୃତି ନଅଗୋଟି ଗଳ୍ପ ସଂକଳନ, ଯାହାର ଏକ ବିଷଦ ତାଲିକା ପରିଶିଷ୍ଟରେ ସ୍ଥାନିତ  ରହିଛି।

ଜଗନ୍ନାଥ ପ୍ରସାଦ ତାଙ୍କର ପ୍ରଥମ ଗଳ୍ପ ସଂକଳନଟିକୁ ନିଜେ ଇଂରାଜୀରେ ଅନୁବାଦ କରିଛନ୍ତି 'ଦ ମ୍ୟାଜିକ ଡିଅର ଏଣ୍ଡ ଅଦର ଷ୍ଟୋରିଜ୍' ଶିରୋନାମାରେ, ୧୯୮୩ ମସିହାରେ। ଏହାକୁ ପ୍ରକାଶ କରିଛନ୍ତି 'ବିକାଶ ଲାଇବ୍ରେରୀ ଅଫ୍ ମଡର୍ଣ୍ଣ ଇଣ୍ଡିଆନ ରାଇଟିଙ୍ଗ' ତରଫରୁ 'ବିକାଶ ପବ୍ଲିଶିଙ୍ଗ ହାଉସ'। ଏହା ପରେ ପରେ ଜେପିଙ୍କର ଅନ୍ୟ କେତେକ ଗଳ୍ପ ସଂକଳନ ମଧ୍ୟ ଇଂରାଜୀରେ ଅନୁବାଦ ହୋଇ ପ୍ରକାଶିତ  ହୋଇଛି।

ଜଗନ୍ନାଥ ପ୍ରସାଦଙ୍କର ଗଳ୍ପଗୁଡ଼ିକୁ ପାଠ କଲେ ଜଣାଯାଏ ଯେ ତାଙ୍କ ପୁରୁଷ ଚରିତ୍ରଗୁଡ଼ିକ ଠିକ୍ ତାଙ୍କପରି ଅନ୍ତର୍ମୁଖୀ ଭାବଧାରାର ତ ନାରୀ ଚରିତ୍ରଗୁଡ଼ିକ ପୂରାପୂରି ବହିର୍ମୁଖୀ । ଜଗନ୍ନାଥ ପ୍ରସାଦଙ୍କ ଗଳ୍ପ ସଂପର୍କରେ ମତ ଦେବାକୁ ଯାଇ ଆଲୋଚକ ସୁମନ୍ୟୁ ଶତପଥୀ କୁହନ୍ତି ଯେ, "ଗଳ୍ପ ଗଠନର ସୃଷ୍ଟି ପ୍ରକ୍ରିୟାରେ ସେ ବିଶେଷ ଭାବରେ କଳ୍ପନା, ପ୍ରଜ୍ଞା ଓ ବୌଦ୍ଧିକତାର ବିନିଯୋଗ କରି ନଥାନ୍ତି; ବରଂ ଏକ ନିଚ୍ଛକ ଜୀବନ ମନସ୍କତା ଓ ବାସ୍ତବ ଦୃଷ୍ଟିକୋଣ ତାଙ୍କ ଗଳ୍ପକୁ ଆଚ୍ଛନ୍ନ କରିଥାଏ। ପ୍ଲଟ୍‌ର ଉପସ୍ଥାପନା ଓ ଚରିତ୍ରମାନଙ୍କ ନିର୍ଦ୍ଦିଷ୍ଟ ଭୂମିକା ସଂପର୍କରେ ସୂଚନା ମାଧ୍ୟମରେ ସେ ତାଙ୍କ ଜୀବନ ଦୃଷ୍ଟି ଓ କଳାବିନ୍ୟାସର ଅପୂର୍ବ ସଂହତି ସୃଷ୍ଟି କରନ୍ତି। ସେଥିପାଇଁ ଗାଳ୍ପିକଙ୍କ ମଧ୍ୟରେ ସେ ଏତେ ନିଆରା।"

ଅନୁରୂପ ଭାବରେ ସୁଧୀ ସମାଲୋଚକ ପ୍ରଫେସର ଡକ୍ଟର ଦାଶରଥି ଦାସ କୁହନ୍ତି, "ଜଗନ୍ନାଥ ପ୍ରସାଦ ଦରଦୀ ନିଶ୍ଚୟ। କିନ୍ତୁ ବଡ଼ ସଂଯତ ଓ ବସ୍ତୁନିଷ୍ଠ। ତାଙ୍କର ଦୃଷ୍ଟିଭଙ୍ଗୀ ନିଷ୍କରୁଣ। ଭାଷା ଭଂଗୀ ସ୍ନେହ ରାଗ ବିବର୍ଜିତ। ଆବେଗ ପ୍ରବଣତାର କଠୋର ନିୟନ୍ତ୍ରଣ ଓ ଭାବାର୍ଦ୍ରତା ବର୍ଜନ ତାଙ୍କର ବିଶେଷତ୍ୱ। ତାଙ୍କ ଗଳ୍ପରେ ଦରଦ ଉଚ୍ଛକଣ୍ଠ ହୋଇ ପାରେନାହିଁ କି ସରସତା ପ୍ରଗଳ୍‌ଭ ହୋଇଉଠେ ନାହିଁ। ହସ କାନ୍ଦର ଦୋଳାରେ ପାଠକଙ୍କୁ ଦୋଳାଇବାର ଚିରାଚରିତ ଗଳ୍ପ ବିନ୍ୟାସକୁ ସେ ପରିହାର କରିଛନ୍ତି। ସବୁଠି ତାଙ୍କର ଲେଖନୀ ଅବିଚଳିତ। ସେଇଥିପାଇଁ

ତାଙ୍କର ଚରିତ୍ରାବଳୀ ଦୁର୍ଜ୍ଞେୟ ଏକ ଶିଳ୍ପ ନିୟତିର ନିର୍ଦ୍ଦେଶରେ ବିଦଗ୍ଧ ପାଠକର ଅବଚେତନ ମନର ଅନାବିଷ୍କୃତ କୋଣରେ ଅଭାବିତ ଅନୁଭୂତିର ବିଦ୍ୟୁତ୍ ସ୍ପର୍ଶଟିଏ ସଂଚାର କରି ଚାଲିଯାଆନ୍ତି; ହସାନ୍ତି ନାହିଁ କି କନ୍ଦାନ୍ତି ନାହିଁ, ସେଇଥିରେ ହିଁ ତାଙ୍କ ଗଳ୍ପର ଶିଳ୍ପସାଫଲ୍ୟ ଓ ଚରିତାର୍ଥତା।"

ହିନ୍ଦୀ ସାହିତ୍ୟର ପ୍ରଖ୍ୟାତ ଗାଳ୍ପିକ ତଥା ଔପନ୍ୟାସିକ 'ଶାନି' (ପୂରା ନାମ ହେଉଛି ଗୁଲଶେର ଖାନ ଶାନି) ଜଗନ୍ନାଥ ପ୍ରସାଦଙ୍କ ଗଳ୍ପ ଉପରେ ମନ୍ତବ୍ୟ ଦେବାକୁ ଯାଇ କୁହନ୍ତି ଯେ ତାଙ୍କର କାହାଣୀ "ନିଜ ନିଜ ଢ଼ଙ୍ଗରେ କୌଣସି ନା କୌଣସି ପ୍ରକାରରେ ସାମାଜିକ ସମସ୍ୟାକୁ ନେଇ ବ୍ୟତିବ୍ୟସ୍ତ ରହିଛନ୍ତି ଓ ଏହିଭଳି ଏକ ଭୂମିର ସଂଧାନରେ ବ୍ୟସ୍ତ ରହିଛନ୍ତି ଯେଉଁ ଦିଗକୁ କି ଖୁବ୍ କ୍ୱଚିତ କଥାକାରଙ୍କ ଦୃଷ୍ଟି ଆକର୍ଷିତ ହୋଇଥାଏ।" ପୁଣି ମଧ୍ୟ ସେ କହିଛନ୍ତି ଯେ, "ଯଦିବା ତାହା କେଉଁଠି ଇନ୍ଦ୍ରିୟଗତ ହୋଇ ରହିଛି, ତାହା କେବଳ ଏହି କାରଣରୁ ଯେ ଲେଖକ ସେହି ସତ୍ୟଠାରୁ ନିଜକୁ ନିବୃତ କରି ରଖିବାକୁ ଚାହିଛନ୍ତି; ଯେଉଁଠାରୁ ଆମେ ସାଧାରଣତଃ ମୁହଁ ଲୁଚାଇ ଫେରି ଚାଲିଆସୁ। କାରଣ ସେଗୁଡ଼ିକର ଯଥାର୍ଥତା ବାସ୍ତବରେ ଅତ୍ୟନ୍ତ ଯନ୍ତ୍ରଣାଦାୟକ ହିଁ ହୋଇଥାଏ।"

ଜଗନ୍ନାଥ ପ୍ରସାଦ କେବଳ ସାମାଜିକ ସମସ୍ୟାକୁ ନେଇ ଗଳ୍ପ ଲେଖନ୍ତି ନାହିଁ, ଅଧିକନ୍ତୁ ଲେଖକ ଭାବରେ ନିଜ ମଧ୍ୟରେ ଭୋଗୁଥିବା ବିଭିନ୍ନ ସମସ୍ୟାକୁ ନେଇ ମଧ୍ୟ ସେ ଗଳ୍ପ ରଚନା କରନ୍ତି। ସେହିପରି କେତେକ ଗଳ୍ପ ହେଉଛି : 'ଶବ୍ଦଭେଦ', 'ଅମରତ୍ୱ', 'ଲେଖକ', 'ପ୍ରିୟ ବିଦୂଷକ', 'ଜନ୍ମଦାତା' ଓ 'ଇଚ୍ଛାପତ୍ର' ପ୍ରଭୃତି। 'ଶବ୍ଦଭେଦ'ରେ କବିତା କିପରି ହେବା ଉଚିତ, ତାର ସଂଜ୍ଞା କ'ଣ ହେବା ଉଚିତ ଇତ୍ୟାଦିକୁ କବି ଭବନାଥ ବିଶ୍ଳେଷଣ କରୁଥିବା ବେଳେ 'ଅମରତ୍ୱ'ରେ ପ୍ରତିଭା ନଥାଇ ମଧ୍ୟ ଗଳ୍ପନାୟକ ଅନିରୁଦ୍ଧ କିପରି ସାହିତ୍ୟରେ ଅମରତ୍ୱ ଲାଭ କରିବାର ଦୁର୍ବାର କାମନା ପୋଷଣ କରିଛି, ତାହା ଦେଖିବାକୁ ମିଳେ। ସେହିପରି 'ଲେଖକ' ଗଳ୍ପରେ ଅତ୍ୟନ୍ତ ଯଶସ୍ୱୀ ନାଟ୍ୟକାର ଚନ୍ଦ୍ରଭାନୁର ବନ୍ଧ୍ୟାମନ କିପରି ଆଉ ସାହିତ୍ୟସାଧନା କରି ପାରୁନାହିଁ ତାହାର ସ୍ପଷ୍ଟ ଚିତ୍ର ରହିଥିବା ବେଳେ 'ପ୍ରିୟ ବିଦୂଷକ'ରେ ଲେଖକ ଯେ କିପରି ଶେଷରେ ବିଦୂଷକଟିଏ ହୋଇଯାଏ ତାହାର ଚିତ୍ର ରହିଛି। 'ଜନ୍ମଦାତା' ଗଳ୍ପନାୟକ ଉମାଶଂକର ଦେଶର ସର୍ବୋଚ୍ଚ ସାହିତ୍ୟ ପୁରସ୍କାର ଲାଭ କରିବାପରେ କିପରି ତା'ର ଗଳ୍ପକୁ ସିରିଏଲ କରାଯିବ ଓ ସିନେମା କରାଯିବାର ପ୍ରଲୋଭନରେ ପଡ଼ିଛି ଓ ସିନେ ଦୁନିଆ ପାଇଁ

ସ୍କ୍ରିପ୍ଟ ପ୍ରସ୍ତୁତ କାଳରେ ତାହାର ମୂଳ ଲେଖ କିପରି ଆକଶ ପାତାଳରେ ରୂପାନ୍ତରିତ ହୋଇ ଉଠିଛି ତାହାର ଚିତ୍ରକୁ ଅବତାରଣା କରିବା ସହିତ ମୂଳ ଲେଖକର ଅସହାୟତାକୁ ଅତ୍ୟନ୍ତ ସ୍ୱଷ୍ଟ ଭାବରେ ଉଲ୍ଲେଖ କରାଯାଇଛି। 'ଇଚ୍ଛାପତ୍ର' ଗଳ୍ପଟି ଅବଶ୍ୟ ଟିକିଏ ଭିନ୍ନ ଧରଣର। ସେଥିରେ ଗଳ୍ପ ନାୟିକା ମନୋରମା ତା'ର ଶେଷ ଜୀବନରେ ନିଜର ଅସହାୟତାକୁ ଇଚ୍ଛାପତ୍ର ମଧ୍ୟରେ ସୀମିତ ରଖି ବଂଚିବାର ଅଭିନବ ପନ୍ଥା ନିର୍ଦ୍ଧାରଣ କରିଛି। ମୃତ୍ୟୁ ପୂର୍ବରୁ କରିବାକୁ ଯାଉଥିବା ଉଇଲରେ ସେ ଯେତେବେଳ ପର୍ଯ୍ୟନ୍ତ କାହାର ନାମ ଲେଖି ନାହାନ୍ତି, ସେତେବେଳ ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ ସ୍ନେହ, ଶ୍ରଦ୍ଧା କରୁଥିବେ ଓ ଭଲ ମନ୍ଦ ବୁଝୁଥିବେ; ତାହା ଯେତେ ଲୋକଦେଖାଣିଆ ହେଉନା କାହିଁକି ବା ଆନ୍ତରିକତାହୀନ ହେଉନା କାହିଁକି। ଜଗନ୍ନାଥ ପ୍ରସାଦଙ୍କ ଗଳ୍ପ ସଂପର୍କରେ କେବଳ ଏତିକି କହିହେବ ଯେ ତାଙ୍କର ପ୍ରତ୍ୟେକଟି ଗଳ୍ପ ହିଁ ହେଉଛି ବାସ୍ତବରେ ସମକାଳୀନ ସମାଜର ଗୋଟିଏ ଗୋଟିଏ ଐତିହାସିକ ଦସ୍ତାବିଜ୍। ସେସବୁକୁ ଅଧ୍ୟୟନ କରିବା ଯାହା, ସମକାଳୀନ ସମାଜକୁ ଉପଲବ୍ଧି କରିବା ତାହା। ବ୍ୟତିକ୍ରମ ଦୁର୍ଲ୍ଲକ୍ଷ୍ୟ ମାତ୍ର।

ଏହିସବୁ ଦୃଷ୍ଟିକୋଣରୁ ଦେଖିଲେ କହିହେବ ଯେ ଜଗନ୍ନାଥ ପ୍ରସାଦ ଏକଦା ଏକ କୌତୂହଳପୂର୍ଣ୍ଣ ଭାବରେ ନିଜର ବଂଧୁ ଅଖିଳ ମୋହନ ପଟ୍ଟନାୟକଙ୍କୁ ଦେଇଥିବା ଧମକ୍ ପୂର୍ଣ୍ଣ ପ୍ରତିଶ୍ରୁତିକୁ ରକ୍ଷା କରି ଯେପରି ଗଳ୍ପ ଜଗତ ମଧ୍ୟକୁ ପ୍ରବେଶ କଲେ, ତାହା ତାଙ୍କ ପାଇଁ ଅତ୍ୟନ୍ତ ଶୁଭଙ୍କରୀ ଥିଲା ଓ ପରେ ପରେ ସେ ସେଠାରେ ନିଜର ସାମ୍ରାଜ୍ୟ କ୍ରମଶଃ ବିସ୍ତାର କରିବାକୁ ଲାଗିଲେ ବେଶ୍ କିଛି ସମୟ ପର୍ଯ୍ୟନ୍ତ। କହିବାକୁ ଗଲେ ଆଧୁନିକ ଓଡ଼ିଆ ଗଳ୍ପ ଜଗତରେ ତାଙ୍କର ସ୍ଥିତି ୧୯୮୦ ମସିହା (ପ୍ରଥମ ଗଳ୍ପର ରଚନା କାଳ)ରୁ ୨୦୦୯ ମସିହା (ଗଳ୍ପ ସଂକଳନ 'ଇନ୍ଦ୍ରଧନୁ, ଆଖି ଓ କବିତାର ଦୀର୍ଘ ଜୀବନ') ପର୍ଯ୍ୟନ୍ତ। ତାଙ୍କର ଗଳ୍ପ ଓଡ଼ିଆ ସାହିତ୍ୟକୁ ଯେପରି ସମୃଦ୍ଧ କରିଛି, ସେହି କ୍ରମରେ ଓଡ଼ିଆ ଗଳ୍ପଜଗତ ମଧ୍ୟ ତାହାର ସ୍ୱୀକୃତି ସ୍ୱରୂପ ୧୯୯୮ ମସିହାରେ ତାଙ୍କର ଗଳ୍ପ ସଂକଳନ 'ପ୍ରିୟ ବିଦୂଷକ'ପାଇଁ ତାଙ୍କୁ 'ଶାରଳା ପୁରସ୍କାର'ରେ ସମ୍ମାନିତ କରିଛି। ତାଙ୍କର ସମସ୍ତ ଗଳ୍ପ ଏକତ୍ର ସଂକଳିତ ହୋଇ "କଥାଯାତ୍ରା" ନାମରେ ମଧ୍ୟ ପ୍ରକାଶ ପାଇସାରିଛି ୨୦୦୦ ମସିହାରେ। ଗାଳ୍ପିକ ଜଗନ୍ନାଥ ପ୍ରସାଦ ପୁଣି ପ୍ରତ୍ୟାବର୍ତ୍ତନ କରିଛନ୍ତି ଗଳ୍ପ ଜଗତରୁ କବିତା ସମ୍ରାଜ୍ୟକୁ। ଏଣିକି ପୁଣି ସେ କବି।

ଜଗନ୍ନାଥ ପ୍ରସାଦଙ୍କ ପ୍ରଥମ ଗଳ୍ପ ପ୍ରକାଶ ପାଇବା ପର୍ଯ୍ୟନ୍ତ ସେ ଯେଉଁ କବିତାମାନ ଲେଖୁଥିଲେ, ସେସବୁର ବିଷୟବସ୍ତୁ ପ୍ରାୟ ରହିଥିଲା ପ୍ରେମ, ମୃତ୍ୟୁ ଓ

ସମୟ। ସେତେବେଳ ପର୍ଯ୍ୟନ୍ତ ତାଙ୍କର କେମିତି ଏକ ଅନୁଭବ ହୋଇଥିଲା ଯେ ସେ ସମାଜମନସ୍କ କବିତା କେବେ ଲେଖିପାରିବେ ନାହିଁ। ତେଣୁ ସମାଜମନସ୍କ ବିଷୟବସ୍ତୁକୁ ନେଇ ସେ ପ୍ରଥମ କରି ଗଳ୍ପ ଲେଖିବାକୁ ଆରମ୍ଭ କଲେ। ମାତ୍ର ଏହି ଗଳ୍ପର ସଫଳତା ତାଙ୍କୁ ଯେତିକି ଯେତିକି ଗଳ୍ପ ରଚନାପାଇଁ ଉତ୍ସାହିତ କଲା, ସେ ସେତିକି ସେତିକି ଆତ୍ମପ୍ରତ୍ୟୟ ଲାଭ କଲେ ଯେ ଗଳ୍ପ ପରି ସେ ନିଶ୍ଚିତ ଭାବରେ ସେହି ସମାଜମନସ୍କତାକୁ ତାଙ୍କର କବିତାରେ ମଧ୍ୟ ରୂପ ଦେଇପାରିବେ। ତାଙ୍କ ଗଳ୍ପଗୁଡ଼ିକୁ ଲକ୍ଷ୍ୟ କଲେ ଜଣାଯିବ ଯେ ତାଙ୍କ ପ୍ରଥମ ସମୟର ଗଳ୍ପରେ ପ୍ରେମ ନାହିଁ; କିନ୍ତୁ ରହିଛି ରାଜନୀତି, ବର୍ଣ୍ଣ ବ୍ୟବସ୍ଥା, ନାରୀ ନିର୍ଯ୍ୟାତନା ଇତ୍ୟାଦି। ଏଣିକି ଏହି ସବୁ ବିଷୟବସ୍ତୁ କବିତା ସ୍ତରକୁ ସଂକ୍ରମିତ ହୋଇଛି ଓ ଜଗନ୍ନାଥ ପ୍ରସାଦଙ୍କ କବିତା ହୋଇ ଉଠିଛି ଅତ୍ୟନ୍ତ ସମାଜମନସ୍କ ଓ ଗଭୀର ମର୍ମସ୍ପର୍ଶୀ।

# କଳା ଇତିହାସରେ ଗବେଷଣା:
# ପାରଂପାରିକ ପଟଚିତ୍ର ଓ ମଠବାଡ଼ିର ପୋଥିପତ୍ର

ଜଗନ୍ନାଥ ପ୍ରସାଦ ଯେତେବେଳେ ଆହ୍ଲାବାଦ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପାସ କଲେ, ସେତେବେଳେ ସେ ସେହି ବିଶ୍ୱବିଦ୍ୟାଳୟ ଅଧୀନରେ ଗବେଷଣାପାଇଁ ଆବେଦନ କରି ପୂର୍ବରୁ ରହୁଥିବା ହଷ୍ଟେଲରେ ପୁନର୍ବାର ରହିବାକୁ ଲାଗିଲେ। ପରବର୍ତ୍ତୀ ପର୍ଯ୍ୟାୟରେ ସେ ପୁଣି ସେହି ବିଶ୍ୱବିଦ୍ୟାଳୟରେ ରାଜନୀତି ବିଜ୍ଞାନ ବିଭାଗରେ ସାମୟିକ ଅଧ୍ୟାପକ ଭାବରେ ନିଯୁକ୍ତି ପାଇବା ପରେ ମଧ୍ୟ ତାଙ୍କର ପୁରୁଣା କୋଠରି ତାଙ୍କପାଇଁ ଅଧ୍ୟୟନ ଓ ଗବେଷଣାର ଉନ୍ନତ ବାତାବରଣରେ ପରିଣତ ହୋଇଗଲା।

ଜଗନ୍ନାଥ ପ୍ରସାଦ ଯେତେବେଳେ ଓଡ଼ିଶାର ଶିଳ୍ପ ବିଭାଗର ଡେପୁଟି ସେକ୍ରେଟାରୀ ତଥା ସେହି ସଂସ୍ଥାର ଡାଇରେକ୍ଟର ରହିଥିବା ବେଳେ ଓଡ଼ିଶାର ହସ୍ତଶିଳ୍ପ କାରିଗରଙ୍କ ସହିତ ମିଶିଥିଲେ ଓ ସେହି କ୍ରମରେ ସେମାନଙ୍କର କାର୍ଯ୍ୟକୁ ବିଶେଷ ଭାବରେ ଅନୁଧ୍ୟାନ କରିଥିଲେ। ତାହା ସହିତ ମଧ୍ୟ ସେ ଓଡ଼ିଶାର ପାରଂପରିକ କଳାକୃତି ଉପରେ ଗବେଷଣା କରି ସେ ଦିଗରେ କିଛି କିଛି ତଥ୍ୟାଦି ସଂଗ୍ରହ କରୁଥିଲେ। ସେତେବେଳେ କଲିକତାର ପ୍ରସିଦ୍ଧ କଳାସମାଲୋଚକ ଓ.ସି. ଗାଙ୍ଗୁଲି ଥିଲେ ଓଡ଼ିଶାର ଚିତ୍ରକଳା ଉପରେ କାମ କରିଥିବା ପ୍ରଥମ ବ୍ୟକ୍ତି। ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ସହିତ ଗାଙ୍ଗୁଲିଙ୍କର ଜଣାଶୁଣା ଥିବାର ଜାଣି ଜେପି ତାଙ୍କ ସାହଚର୍ଯ୍ୟରେ ଗାଙ୍ଗୁଲିଙ୍କ ସହିତ ସଂପର୍କ ସ୍ଥାପନ କଲେ। ଓଡ଼ିଶାର ଶିଳ୍ପକଳା ସଂପର୍କରେ ଯଦିଓ ବିଶଦ୍ ଆଲୋଚନା କରାଯାଇଛି, ତେବେ ଓଡ଼ିଶାର ଚିତ୍ରକଳା ସଂପର୍କରେ କୌଣସି ବିଧିବଦ୍ଧ ଆଲୋଚନା କରା ଯାଇ ନ ଥିବାରୁ ଜେପି ଓଡ଼ିଶାର ଚିତ୍ରକଳା ଉପରେ ଗବେଷଣା କାର୍ଯ୍ୟ କରିବାକୁ ବଦ୍ଧପରିକର ହୋଇଗଲେ।

ଓଡ଼ିଶାର ପାରଂପରିକ ଚିତ୍ରକଳା ସଂପର୍କରେ ଅନୁଧ୍ୟାନ କଲାବେଳେ ସେ ଅନେକଙ୍କ ସାହାଯ୍ୟ ଗ୍ରହଣ କରିଛନ୍ତି। ଯେପରି : ଐତିହାସିକ କେଦାର ନାଥ ମହାପାତ୍ର, ଡେଭିଡ୍ ମେ, ଜୋଆନ୍ନା ଉଇଲିୟମସ୍ ଓ ବିଶେଷକରି ରଘୁରାଜପୁରର ଶିଳ୍ପୀକୁଳ ବିଶେଷରେ ବର୍ଷିୟାନ ଶିଳ୍ପୀ ଶ୍ରୀ ଜଗନ୍ନାଥ ମହାପାତ୍ର। ଏମାନେ ସମସ୍ତେ ଜେପିଙ୍କୁ କେବଳ ଉତ୍ସାହ ପ୍ରଦାନ କରି ନାହାନ୍ତି, ପ୍ରକାରାନ୍ତରେ ତାଙ୍କୁ ଆଗକୁ ବଢ଼ିବାପାଇଁ ବିଭିନ୍ନ ଉପାୟରେ ସାହାଯ୍ୟ କରିଛନ୍ତି। ସବୁଠାରୁ ବଡ଼ କଥା ହେଉଛି ଯେ ସେତେବେଳେ ଶ୍ରୀ ଦେବୀ ପ୍ରସନ୍ନ ପଟ୍ଟନାୟକ ତାଙ୍କୁ ହୋମିଭାଭା ଫେଲୋସିପ ଗ୍ରହଣ କରି ଏହି ଚିତ୍ରକଳା ଦିଗରେ ଗବେଷଣା କରିବାକୁ ଦିଗଦର୍ଶନ ପ୍ରଦାନ କରିଥିଲେ।

୧୯୮୦ ବେଳକୁ ଜଗନ୍ନାଥ ପ୍ରସାଦ ଦେଖିବାକୁ ପୂରା ପୂରି ଜଣେ କଳାକାର ଭଳି ମନେ ହୋଇଥାନ୍ତି। ମୁହଁରେ ଲମ୍ବା କଲି ଓ ମୁଣ୍ଡରେ ଲମ୍ବ ବାଳ, ଯାହା ସେତେବେଳର ଯୁବ ସମାଜର ଏକ ରୁଚି ରହିଥିଲା, ତାହାହିଁ ତାଙ୍କର ପରିପାଟୀ ଥିଲା। ତେବେ ସେ ଏହି ସମୟରେ ନିଶ ରଖିବାକୁ ଆରମ୍ଭ କରିଥିଲେ। ଜେପିଙ୍କର ନିଶ ରଖିବା ପ୍ରସଙ୍ଗ ମଧ୍ୟ ଏକ ପ୍ରାସଙ୍ଗିକ ବ୍ୟାପାର। ସେ ତରୁଣ ବୟସରେ ନିଶ ରଖି ନଥିଲେ। ଏପରି କି ଭାରତୀୟ ପ୍ରଶାସନିକ ସେବାରେ ଯୋଗ ଦେବା ପରେ ମଧ୍ୟ ସେ ନିଶ ରଖି ନଥିଲେ। କିନ୍ତୁ ୧୯୭୨ ମସିହା ବେଳକୁ ତାଙ୍କୁ କେହି ଜଣେ 'ଅନାମିକା' ଏକ ପତ୍ର ଲେଖିଥିଲେ। ଘଟଣାଟି 'ପ୍ରିୟ ଜେପି' ପୁସ୍ତକର ପୃଷ୍ଠା ୨୫ରେ ରହିଥିବା 'ଅନାମିକା' ପ୍ରସଙ୍ଗରେ ରହିଅଛି। ଘଟଣାଟି ପ୍ରାୟ ଏହିପରି । ସେତେବେଳେ ପାରାଦୀପଠାରେ ଏକ ଅଏଲ ରିଫାଇନାରୀ କରିବାପାଇଁ ଦାବୀ ଚାଲିଥାଏ। ଏବଂ ନିଶାମଣି ଖୁଣ୍ଟିଆଙ୍କ ଉଦ୍ୟମରେ ଏକ ବିରାଟ ସଭା ମଧ୍ୟ ହୋଇଥିଲା। ଅମୃତ ବଜାର ପତ୍ରିକାରେ ଏ ସଂକ୍ରାନ୍ତରେ ଜେପିଙ୍କର ଏକ ଲେଖା ଫଟୋ ସହିତ ପ୍ରକାଶ ପାଇଥିଲା। ତାହାକୁ ପଢ଼ି ଜନୈକ ଅନାମିକା ତାଙ୍କୁ ତା: ୬।୧୦।୭୨ରେ ଯେଉଁ ପତ୍ର ପ୍ରେରଣ କରିଥିଲେ, ସେଥିରେ ସେ ଲେଖିଥିଲେ, "......କି ସୁନ୍ଦର ମନ ମତାଣିଆ ଚେହେରା ସତରେ !! କିନ୍ତୁ ମନରେ ଏକ ଅବଶୋଷ ରହିଗଲା– ଆପଣ ନିଶ କାହିଁକି ରଖି ନାହାନ୍ତି ଯେ? ଦେଖିଲେ, ଆମେ ଆପଣଙ୍କ ଫଟରେ ନିଶ ରଖି ଦେଇଛୁ – କେତେ ସୁନ୍ଦର ଦେଖା ଯାଉଛି ! ମାନେ ଆପଣଙ୍କର ଯେଉଁ ନାରୀମନଲୋଭା ସୌନ୍ଦର୍ଯ୍ୟ ତାହା ଶତଗୁଣ ବୃଦ୍ଧି ପାଉଛି – ଆମର ଗୋଟିଏ ଛୋଟ ମିନତି ରଖିବେ? ଆପଣ ନିଶ

ରଖନ୍ତୁ - ରଖିବେ ନାଁ? ନହେଲେ ଆମର ମନ ବହୁତ ଦୁଃଖ ହେବ।" ଜେପି ତାଙ୍କର ପ୍ରିୟ ପାଠିକାଙ୍କୁ ନିରାଶ କରି ନାହାନ୍ତି। ସେ ନିଶ ରଖିଛନ୍ତି ଅବଶ୍ୟ ଚାରିବର୍ଷ ପରେ, ଅର୍ଥାତ ୧୯୭୬ ମସିହାରେ। ସେତେବେଳକୁ ଅବଶ୍ୟ ସେ ପୁରୀର ପାରଂପାରିକ ଚିତ୍ରକଳା ଉପରେ ଗବେଷଣା କାର୍ଯ୍ୟ ଆରମ୍ଭ କରି ସାରିଲେଣି।

ଗବେଷଣା କାର୍ଯ୍ୟ ପାଇଁ ସେ ପ୍ରଥମେ ଓଡ଼ିଶା ଆସିଲା ବେଳକୁ ହାଇଡେଲବର୍ଗ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଡକ୍ଟର ହରମାନ କୁଲକେ ଭୁବନେଶ୍ୱରରେ ରହି ଜଗନ୍ନାଥ ଧର୍ମ ଉପରେ ଗବେଷଣା କରୁଥିଲେ। ସେ ପୁରୀ ମନ୍ଦିର ସଂପର୍କିତ ଅନେକ କାଗଜପତ୍ର ଓ ଦଲିଲ-ଦସ୍ତାବିଜ ସଂଗ୍ରହ କରି ସାରିଥିଲେ। ଜଗନ୍ନାଥ ପ୍ରସାଦଙ୍କ ଗବେଷଣାରେ ଆବଶ୍ୟକ ହେଉଥିବା ସମସ୍ତ ପ୍ରକାର ଦଲିଲ ବା କାଗଜପତ୍ର ଯାହା ତାଙ୍କ ପାଖରେ ଥିଲା ସେ ତାହାକୁ ଅକୁଣ୍ଠିତ ଚିତ୍ତରେ ତାଙ୍କୁ ପ୍ରଦାନ କରିଥିଲେ ଓ ବିଶେଷ କରି ତାଙ୍କ ଦ୍ୱାରା ସଂପାଦିତ "The Cult of Jagannath" ପୁସ୍ତକଟି ସେତେବେଳେ ଜେପିଙ୍କ ଗବେଷଣାରେ ଅତ୍ୟନ୍ତ ଉପାଦେୟ ହୋଇଥିଲା।

ଭୁବନେଶ୍ୱରରେ ବାସ କରୁଥିବା ବିଶିଷ୍ଟ ଐତିହାସିକ ଶ୍ରୀଯୁକ୍ତ କେଦାର ନାଥ ମହାପାତ୍ର ମଧ୍ୟ ଅନେକାଂଶରେ ଜଗନ୍ନାଥ ପ୍ରସାଦଙ୍କୁ ତାଙ୍କ ଗବେଷଣା ଦିଗରେ ସହାୟତାର ହାତ ବଢ଼ାଇଥିଲେ। ଏସବୁ ବ୍ୟତିରେକ ସବୁଠାରୁ ବଳି ବଡ଼ ସାହାଯ୍ୟ କିନ୍ତୁ ମିଳିଥିଲା କାଲିଫର୍ଣ୍ଣିଆ ୟୁନିଭରସିଟିର ପ୍ରଫେସର ଜୋଆନ୍ନା ଉଇଲିଅମସ୍‌ଙ୍କଠାରୁ।

ସେତେବେଳେ ଅନେକ ବିଦେଶୀୟ ଭାରତୀୟ କଳା-ସଂସ୍କୃତି ଉପରେ ବିଶେଷ କରି ଓଡ଼ିଶାର କଳା-ସଂସ୍କୃତି ଉପରେ ଗବେଷଣା କରିବା ଆରମ୍ଭ କରି ଦେଇଥିଲେ। ଯେପରି ସୁଇଜରଲ୍ୟାଣ୍ଡର ଏବରହାର୍ଡ ଫିସର, ଜର୍ମାନର ହରମାନ କୁଲକେ, ଆମେରିକାର ଥୋମାସ୍ ଇ ଡୋନାଲଡ୍‌ସନ ଓ ହେନରିକ୍ ଭନ୍ ଷ୍ଟିଟେନକ୍ରନ ପ୍ରମୁଖ ବ୍ୟକ୍ତିମାନେ। ଅନ୍ୟପକ୍ଷରେ ଯେଉଁ କେତେକ ପ୍ରମୁଖ ଓଡ଼ିଆମାନେ ଏହି ଦିଗରେ ବିଶେଷ କରି ଚିତ୍ରକଳା ଦିଗରେ କାମ କରି ଯଶସ୍ୱୀ ହୋଇ ସାରିଥିଲେ, ସେମାନେ ପାଶ୍ଚାତ୍ୟମୁଖୀ ହୋଇ ସାରିଥିଲେ। ଯଥା ଦିନାନାଥ ପାଠୀ ଓ କପିଳା ବାତ୍ସାୟନ। ତେବେ ଉତ୍କଳୀୟ କଳା ଓ ସଂସ୍କୃତିପ୍ରେମୀ ଜୋଆନ୍ନା ଉଇଲିଆମ୍‌ସ୍‌ଙ୍କର ପ୍ରସଙ୍ଗ ଏ କ୍ଷେତ୍ରରେ କେବଳ ଅନ୍ୟତମ ନୁହେଁ; ଅତ୍ୟନ୍ତ ସ୍ମରଣୀୟ

ମଧ୍ୟ । କାରଣ ସେ ହିଁ ଗବେଷଣା କାଳରେ ଜଗନ୍ନାଥ ପ୍ରସାଦଙ୍କର ଥିଲେ ସବୁଠାରୁ ଅଧିକ ବଂଧୁ, ଦାର୍ଶନିକ ଓ ଦିଗଦର୍ଶକ ।

ଜୋଆନ୍ନା ଉଇଲିଆମ୍ସ୍ ଥିଲେ କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର କଳା-ଇତିହାସ ବିଭାଗରେ ପ୍ରଫେସର ଓ ସେତେବେଳେ ସେ ତାଳପତ୍ର ପୋଥିଚିତ୍ର ଉପରେ ଗବେଷଣା କରୁଥିଲେ । ତାଙ୍କ ସହିତ ଜେପିଙ୍କର ସାକ୍ଷାତ ହୁଏ ୧୯୭୯ ମସିହାରେ । ଜୋଆନ୍ନା ଉଇଲିଆମସ୍ ଭାରତ ଗସ୍ତରେ ଆସି ଥରେ ମୁମ୍ବାଇର ଏସିଆଟିକ୍ ସୋସାଇଟିର ଏକ ଐତିହାସିକ ସମ୍ମିଳନୀରେ ଗୁପ୍ତଯୁଗର କଳା ଉପରେ ଉଦ୍‌ବୋଧନ ଦେଉଥିବା ଅବସ୍ଥାରେ ଜେପି ତାଙ୍କୁ ଶୁଣିଲେ । ଯାହାକୁ କୁହନ୍ତି, ଗୁଣ ଚିହ୍ନେ ଗୁଣିଆ - ସୁନା ଚିହ୍ନେ ବଣିଆ । ସେହି ନ୍ୟାୟରେ ଜୋଆନ୍ନାଙ୍କ ଅଭିଭାଷଣ ଜେପିଙ୍କୁ ଆକୃଷ୍ଟ କଲା । ତେଣୁ ତା' ପରଦିନ ଜେପି ଏସିଆଟିକ ସୋସାଇଟିର ସଭାପତି ହରିଦାସ ସ୍ୱାଲିଙ୍କ ବାସଗୃହରେ ତାଙ୍କୁ ଭେଟିବା ପରେ ଯେପରି ଜାଣିଲେ ଯେ ସେ ଓଡ଼ିଶାର ତାଳପତ୍ର ପୋଥି ଉପରେ ଗବେଷଣା କରିବାକୁ ମନସ୍ଥ କରିଛନ୍ତି । ଅନୁରୂପ ଭାବରେ ଜୋଆନ୍ନା ମଧ୍ୟ ଜେପିଙ୍କ ସଂପର୍କରେ ଜାଣିବାକୁ ଲାଗିଲେ । ସେ ଜେପିଙ୍କୁ ଓଡ଼ିଶାର ପାରଂପରିକ ପଟଚିତ୍ର ଉପରେ ଗବେଷଣା କରିବାକୁ ଉତ୍ସାହିତ କଲେ ଓ ସେ ଦିଗରେ ନିଜର ସାହାଯ୍ୟର ହାତ ବଢ଼ାଇଲେ । ସମରୁଚିର ସେମାନଙ୍କ ମଧ୍ୟରେ ବଂଧୁତ୍ୱ ସୁଦୃଢ଼ ହୋଇଉଠିଲା । ପରେ ପରେ ହୋମି ଭାଭା ଫେଲୋସିପ ପଟଚିତ୍ର ଉପରେ ଗବେଷଣା ପାଇଁ ଜଗନ୍ନାଥ ପ୍ରସାଦଙ୍କ ରୁଚିର ମାର୍ଗକୁ ପ୍ରଶସ୍ତ କରିଦେଲା । ସେ ନିଜର ଗବେଷଣା ଦିଗରେ ଆଗେଇ ଚାଲିଲେ ଓ ଜୋଆନ୍ନାଙ୍କୁ ନିଜର ମାର୍ଗଦର୍ଶିକା ଭାବରେ ଗ୍ରହଣ କରିନେଲେ । ପରବର୍ତ୍ତୀ କାଳରେ ଜୋଆନ୍ନା ଉଇଲିଆମ୍ସ୍ ମଧ୍ୟ ଯେତେବେଳେ ଓଡ଼ିଶାର କଳା ଉପରେ ନିଜର ପୁସ୍ତକ ପ୍ରକାଶ କଲେ, ସେତେବେଳେ ଜେପିଙ୍କୁ ସ୍ମରଣ କରି ଲେଖିଥିଲେ, "I can not begin to list all the ways I am indebted to J.P. Das of Delhi." ଅନ୍ୟପକ୍ଷରେ ଜେପି ବର୍କଲେ ବିଶ୍ୱବିଦ୍ୟାଳୟ, କାଲିଫର୍ଣ୍ଣିଆର କଳା-ଇତିହାସ ବିଭାଗକୁ ଅନେକ ଥର ନିମନ୍ତ୍ରିତ ହୋଇ ଯାଉଥିଲେ, ଯେଉଁଠି କି ଜୋଆନ୍ନା ନିଜେ ପ୍ରଫେସର ଭାବରେ କାର୍ଯ୍ୟ କରୁଥିଲେ ।

୧୯୮୦ ମସିହାରେ ଜଗନ୍ନାଥ ପ୍ରସାଦ ରଘୁରାଜପୁରରେ ଭେଟିଥିଲେ ବ୍ୟୋଜ୍ୟେଷ୍ଠ ଶିଳ୍ପୀ ଶ୍ରୀଯୁକ୍ତ ଜଗନ୍ନାଥ ମହାପାତ୍ରଙ୍କୁ । ପରେ ପରେ ନିଜର ଗବେଷଣା କାର୍ଯ୍ୟ ପାଇଁ ସେ ଉଭୟ ପୁରୀ ଓ ରଘୁରାଜପୁରରେ ରହି ଯାଇଛନ୍ତି

ପ୍ରାୟ ଆଠମାସରୁ ଊର୍ଦ୍ଧ୍ୱକାଳ। ଏହି କ୍ରମରେ ସେ ବାନ୍ଧି ହୋଇଯାଆନ୍ତି ସେଠାକାର ଲୋକମାନଙ୍କ ସ୍ନେହ ଓ ଶ୍ରଦ୍ଧା ମଧ୍ୟରେ। ତନ୍ନ ତନ୍ନ କରି ସେ ନିରୀକ୍ଷଣ କରନ୍ତି ପଟଚିତ୍ର ଅଂକନର ଅପୂର୍ବ ଶୈଳୀକୁ। ଆବିଷ୍କାର ମଧ୍ୟ କରନ୍ତି ତା' ପଛରେ ରହିଥିବା କିଂବଦନ୍ତୀଠାରୁ ଆରମ୍ଭ କରି ଅନେକ ଶାସ୍ତ୍ରୀୟ ମାନ୍ୟତାର ପ୍ରସଙ୍ଗକୁ।

ପୁରୀ ରହଣି କାଳରେ ସେ ପ୍ରତ୍ୟହ ଜଗନ୍ନାଥ ମନ୍ଦିରକୁ ଯାଉଥିଲେ ଓ ପଣ୍ଡାମାନଙ୍କର ଅତି ଆପଣାର ହୋଇ ଯାଇଥିଲେ। ପ୍ରାୟ ସବୁଦିନେ ଜୟ ବିଜୟ ଦ୍ୱାର ଖୋଲିଲା ବେଳକୁ ସେ ସେଠାରେ ଉପସ୍ଥିତ ରହୁଥିଲେ। ପୂଜକ ତାଙ୍କୁ ରତ୍ନସିଂହାସନର ଚାରିକଡ଼ରେ ପ୍ରଦକ୍ଷିଣ କରାଇବାପାଇଁ ନେଇ ଯାଉଥିଲେ। ବିଶେଷ କରି କ୍ଷେତ୍ର ଅଧ୍ୟୟନ କାଳରେ ସେ ତିନି ଚିତ୍ରକାର ହାକିମଙ୍କୁ ଯେପରି ଅଧ୍ୟୟନ କରିଥିଲେ, ତାହା ଥିଲା ସବୁଠାରୁ ନିଆରା। ସେମାନେ କିପରି ଅଣସରଘରେ ତିନିଠାକୁର ରହିଥିବା ବେଳେ ଠାକୁରଙ୍କ ପ୍ରତିବଦଳରେ ତାଙ୍କର ପଟଚିତ୍ର ବା ଅଣସର ପଟିକୁ  ନିଜ ଘରୁ ମନ୍ଦିରକୁ ଛତ୍ରି ଘୋଡ଼ାଇ, ଘଣ୍ଟ ଓ କାହାଳୀର ବାଦନ ମାଧ୍ୟମରେ ଆଣିଥାଆନ୍ତି, ତାହାର ପର୍ଯ୍ୟବେକ୍ଷଣ ଥିଲା ତାଙ୍କ ଗବେଷଣାର ଅନ୍ୟତମ ଦିଗ।

ନିଜର ଗବେଷଣା କାର୍ଯ୍ୟରେ ଜଗନ୍ନାଥ ପ୍ରସାଦ ଆଉ ଜଣେ ବ୍ୟକ୍ତିଙ୍କର ମଧ୍ୟ ସାହାଯ୍ୟ ଗ୍ରହଣ କରିଥିଲେ, ସେ ହେଉଛନ୍ତି ଡେଭିଡ୍ ମେ। ସେ ଯେତେବେଳେ ଏହି ଗବେଷଣା କାର୍ଯ୍ୟ ଆରମ୍ଭ କଲେ, ସେତେବେଳେ ବମ୍ବେର ମୁଲକରାଜ ଆନନ୍ଦ ତାଙ୍କର ପରିଚୟ କରାଇ ଦେଇଥିଲେ ଡେଭିଡ ମେଙ୍କ ସହିତ। ଡେଭିଡ ଗୋଟିଏ ବିଦେଶୀ ଔଷଧ କଂପାନୀର ସର୍ବୋଚ୍ଚ କର୍ତ୍ତା ଥିଲେ ଏବଂ ଥିଲେ ମଧ୍ୟ ଜଣେ ସୌଖୀନ ଫଟୋଗ୍ରାଫର୍। ସେ ଯେତେବେଳେ ଶୁଣିଲେ ଯେ ଜେପି ଓଡ଼ିଶାର ପାରଂପାରିକ ପଟଚିତ୍ର ଉପରେ ନିଜର ଗବେଷଣା କାର୍ଯ୍ୟ କରିବାକୁ ଯାଉଛନ୍ତି, ସେତେବେଳେ ସେ ନିଜ ଆଡ଼ୁ ଆବଶ୍ୟକୀୟ ଫଟୋଚିତ୍ର ଉତ୍ତୋଳନ କରିବାର ପ୍ରତିଶ୍ରୁତି ପ୍ରଦାନ କରିଥିଲେ। ପରବର୍ତ୍ତୀ କାଳରେ ସେ ନିଜର ପ୍ରତିଶ୍ରୁତି ରକ୍ଷା କରି ୧୯୮୦ ମସିହାର ଜାନୁଆରୀ ମାସରେ ପୁରୀ ଆସି ଜେପିଙ୍କ ଗବେଷଣା ଦିଗରେ ଆବଶ୍ୟକ ହେଉଥିବା ସମସ୍ତ ଫଟୋଚିତ୍ର ଉତ୍ତୋଳନ କରିଥିଲେ, ଯାହାକି ଅତ୍ୟନ୍ତ କଷ୍ଟସାଧ ବ୍ୟାପାର ଥିଲା। ସେ ଏହି କାର୍ଯ୍ୟ କରିବା ପୂର୍ବରୁ ନିଜକୁ କିପରି ପ୍ରସ୍ତୁତ କରିଥିଲେ ଓ ତାଳପତ୍ର ଚିତ୍ରର ଫଟୋଚିତ୍ର ଉତ୍ତୋଳନ କରିବା କାର୍ଯ୍ୟ ଯେ କିପରି କଷ୍ଟସାଧ ତାହା ଜାଣି ମଧ୍ୟ ସେ କିପରି ସେହି ଆସ୍ପର୍ଦ୍ଧାକୁ ସାହସର ସହିତ ଗ୍ରହଣ

କରିଥିଲେ, ତାହା ତାଙ୍କର ପତ୍ରରୁ ବେଶ୍ ଉପଲବ୍ଧ କରିହୁଏ। ସେ ଜେପିଙ୍କୁ ଲେଖିଥିବା ପତ୍ରରେ ଲେଖିଛନ୍ତି, "........... I have reread the chapter on Orissa Painting in Charles Fabri's book "History of Art in Orissa" and now realise what a fascinating and important role you have undertaken." ପୁଣି ମଧ୍ୟ ସେ ଲେଖିଛନ୍ତି, "I will do all I can to help you from the photographic side of things, although, if Prof. O.C. Gangoly is correct, the stylus-incized palm-leaf paintings prove a difficult subjet for a photographer. Yet this is just the type of challenge I like. I will see if I can get hold of some and practise on them." ଜଗନ୍ନାଥ ପ୍ରସାଦ ସେ ସବୁ କଷ୍ଟସାଧ୍ୟ ଫଟୋଗୁଡ଼ିକୁ ତାଙ୍କର ପୁରୀ ପେଣ୍ଟିଙ୍ଗସ୍ ଗ୍ରନ୍ଥରେ ସନ୍ନିବେଶିତ ରଖିଛନ୍ତି।

ଜଗନ୍ନାଥ ପ୍ରସାଦ ନିଜର ଗବେଷଣା ବେଳେ ଯେପରି ବିଭିନ୍ନ ମ୍ୟୁଜିୟମକୁ ଯାଇ ତଥ୍ୟ ସଂଗ୍ରହ କରିବା ଦିଗରେ ଯେପରି ବହୁ କଷ୍ଟ ସ୍ୱୀକାର କରିଛନ୍ତି, ଅନୁରୂପ ଭାବରେ ପୁରୀର ସେହି ଅଖ୍ୟାତ ଗାଁ ରଘୁରାଜପୁରରେ ଦୀର୍ଘ ଆଠମାସ ରହି, ଚିତ୍ରକାରଙ୍କ ସହିତ ସମୟ କଟାଇ ଚିତ୍ରକାର ପରିବାର ସହିତ ଏକାତ୍ମ ହୋଇ ଯେପରି ପଟଚିତ୍ରକୁ ଆତ୍ମସ୍ଥ କରିଛନ୍ତି ଓ ସେଥିରେ ତଲ୍ଲୀନ ହୋଇ ଉଠିଛନ୍ତି ତାହାର ଇୟତ୍ତା ନାହିଁ। ଶେଷରେ ସେ ସଫଳତାର ଶୀର୍ଷଭାଗରେ ପଦାର୍ପଣ କରିଛନ୍ତି, ତାଙ୍କର ଗବେଷଣାତ୍ମକ ପୁସ୍ତକ "ପୁରୀ ପେଣ୍ଟିଙ୍ଗସ୍" ମାଧ୍ୟମରେ। ଏହି ପୁରୀ ପେଣ୍ଟିଙ୍ଗସ୍ ଗ୍ରନ୍ଥଟି କିନ୍ତୁ ଏକକାଳୀନ ପ୍ରାଚ୍ୟ ଓ ପାଶ୍ଚାତ୍ୟରେ ନିଜର ଶଙ୍ଖନାଦ ଶୁଣାଇଥିଲା। ୧୯୮୨ ମସିହାରେ ଏହା ଆମେରିକାର ହ୍ୟୁମାନିଟିଜ୍ ପ୍ରେସ୍ ଓ ନୂଆଦିଲ୍ଲୀର ଆର୍ଣ୍ଣଲ୍ଡ-ହାଇନେମାନ ପବ୍ଲିଶର୍ସ କର୍ତ୍ତୃକ ପ୍ରକାଶ ଲାଭ କରିଥିଲା। ପରବର୍ତ୍ତୀ କାଳରେ ୨୦୦୫ ମସିହାରେ ଏହି ପୁସ୍ତକଟି ପୁଣିଥରେ ପରିମାର୍ଜିତ ଶୈଳୀରେ 'ଇଣ୍ଡିଆନ ହିଷ୍ଟୋରିକାଲ ଏଣ୍ଡ ଲିଟରେଚର ଷ୍ଟଡିଜ୍ ସିରିଜ' ଅନୁକ୍ରମରେ 'ପ୍ରଫୁଲ୍ଲ' ସଂସ୍ଥା ଦ୍ୱାରା ପ୍ରକାଶିତ ହୋଇଛି। ନିକଟରେ ଏହି ପୁସ୍ତକର ତୃତୀୟ ସଂସ୍କରଣ ପ୍ରକାଶ ପାଇଛି ୨୦୧୭ ମସିହାରେ, ନୂଆଦିଲ୍ଲୀର ଶୁଭି ପ୍ରକାଶନ ଦ୍ୱାରା। ଏହି ପୁସ୍ତକଟି ପାଇଁ ସର୍ବପ୍ରଥମେ ଜେପି ଆମ ଜାତୀୟ ସ୍ତରରେ ଓ ଆନ୍ତର୍ଜାତିକ ସ୍ତରରେ ଜଣେ ପ୍ରଥିତଯଶା କଳା ସମାଲୋଚକ ଭାବରେ ଖ୍ୟାତି ଅର୍ଜନ କରିବାକୁ ସକ୍ଷମ ହୋଇପାରିଥିଲେ। ସେ ଏହି ଗ୍ରନ୍ଥଟିକୁ ଉତ୍ସର୍ଗ କରିଥିଲେ ତାଙ୍କର ପ୍ରେରଣାର ଉତ୍ସ ଭାବରେ ସର୍ବଦା ତତ୍ପର ଥିବା ସେହି ଜୋଆନ୍ନା ଉଇଲିଆମ୍ସଙ୍କୁ।

'ପୁରୀ ପେଣ୍ଟିଙ୍ଗସ୍'ରେ ରହିଥିଲା ମୋଟ ୧୩ ଗୋଟି ଅଧ୍ୟାୟ। ଏହାର ପରିଶିଷ୍ଟରେ ରହିଥିଲା ୪୮ ଗୋଟି ପୁରୀ ଢ଼ଙ୍ଗରେ ଅଂକିତ ମଣିଷ, ରାକ୍ଷସ, ଋଷି, ଗରୁଡ଼ ପରି ମଣିଷାକୃତି ଓ ବାଘ, ସିଂହ, ମୟୂରାଦି ଅନେକ ପଶୁ-ପକ୍ଷୀଙ୍କର ରୂପରେଖ ବା ସ୍କେଚ ସହିତ ନାରୀ ଓ ନାରୀମାନଙ୍କର ଗହଣାସାମଗ୍ରୀ ଓ ୨୭ ଗୋଟି ରଂଗୀନ ଛବି। ୧୩ ଗୋଟି ଅଧ୍ୟାୟରେ ସନ୍ନିବେଶିତ ରହିଥିଲା (କ) ପୁରୀ ଚିତ୍ରକାର ଗୋଷ୍ଠୀଙ୍କ ସମାଜ (ଖ) ଚିତ୍ରକାର ଜାତିର କଥା (ଗ) ପ୍ରଭୁ ଜଗନ୍ନାଥଙ୍କ ନିକଟରେ ଚିତ୍ରକାରଙ୍କ ନିଯୋଗ, (ଘ) ଚିତ୍ରକାରମାନଙ୍କ ସେବା (ଙ) ସେବାର ଉନ୍ମେଷ ଓ ବିକାଶ (ଚ) ବ୍ୟବସାୟ ପାଇଁ ପଟଚିତ୍ର (ଛ) କଳାର ଅବକ୍ଷୟ ଓ ପୁନରୁଦ୍ଧାର (ଜ) ସାମଗ୍ରୀ, ସରଞ୍ଜାମ ଓ ଶୈଳୀ (ଝ) ପଟଚିତ୍ରରେ ବାର୍ତ୍ତା (ଞ) ଲୋକପ୍ରିୟ କଳାକୃତିର କେତେକ ନମୂନା (ଟ) ପ୍ରଶିକ୍ଷଣ ଓ ପ୍ରସାରଣ (ଠ) ପଟ ଓ ଅନ୍ୟାନ୍ୟ ଉତ୍କଳୀୟ ଚିତ୍ର ଓ ଶେଷରେ (ଡ) ପୁରୀ ପଟଚିତ୍ରକଳାର ଏକ ସମାଗ୍ରିକ ମୂଲ୍ୟାୟନ।

ଜଗନ୍ନାଥ ପ୍ରସାଦ ଏହି ପୁସ୍ତକରେ ଅନେକ ଐତିହାସିକ ତଥା କଳା ସମାଲୋଚକଙ୍କର ସିଦ୍ଧାନ୍ତକୁ ନିଜ ଗବେଷଣା ପରିସର ମଧ୍ୟକୁ ଆଣିଛନ୍ତି। ସେମାନଙ୍କ ମଧ୍ୟରେ ରହିଛନ୍ତି ପାଶ୍ଚାତ୍ୟ ଦେଶର ପଣ୍ଡିତଙ୍କ ସମେତ ଆମ ଭାରତୀୟ ବିଦ୍ୱାନ ବିଶେଷ। ଯେପରି : ଆଣ୍ଡ୍ରିୟୁ ଷ୍ଟର୍ଲିଂ, ଜେମସ୍ ଫର୍ଗୁସନ, ଡବ୍ଲ୍ୟୁ. ଡବ୍ଲ୍ୟୁ. ହଣ୍ଟର, ଆଲିସ୍ ବୋନର, ଷ୍ଟେଲା କ୍ରାମରିସ୍, ମନମୋହନ ଗାଂଗୁଲି, ଡି.ପି. ଘୋଷ, ଓ.ସି. ଗାଂଗୁଲି ପ୍ରମୁଖ। ସେହି କାରଣରୁ ପ୍ରଫେସର ଗଣେଶ୍ୱର ମିଶ୍ର ତାଙ୍କର "ଜଗନ୍ନାଥ ପ୍ରସାଦ : ସୃଜନ ଯାତ୍ରା" ପୁସ୍ତକରେ ଉଲ୍ଲେଖ କରି କହିଛନ୍ତି ଯେ, "ଜଗନ୍ନାଥ ପ୍ରସାଦଙ୍କ 'ପୁରୀ ପେଣ୍ଟିଙ୍ଗସ' ପାଠକଲେ ମନେହୁଏ, ପଟଚିତ୍ର କଳା ଏକ ପରଂପରା, ଏକ ରୀତି- ପୁଣି ଜୀବନ୍ତ ରକ୍ତମାଂସର ଏକ ଚଳମାନ ରୂପ।" ପ୍ରଖ୍ୟାତ ଐତିହାସିକ ଡକ୍ଟର ହରେକୃଷ୍ଣ ମହତାବ ମଧ୍ୟ ୧୯୮୨ ମସିହା ଡିସେମ୍ବର ମାସ 'ଝଂକାର'ର ସଂପାଦକୀୟ ପୃଷ୍ଠାରେ କୁହନ୍ତି, "ପଟଚିତ୍ର ସମ୍ବନ୍ଧରେ ପୁରୀ ପେଣ୍ଟିଙ୍ଗସ୍ ହେଉଛି ସର୍ବଶ୍ରେଷ୍ଠ ପୁସ୍ତକ। ପୁସ୍ତକର ମୁଦ୍ରଣ ଚିତ୍ରକଳାର ଅନୁରୂପ। ଲେଖକ ଶ୍ରୀ ଜଗନ୍ନାଥ ପ୍ରସାଦ ଦାସଙ୍କୁ ଆମ୍ଭେମାନେ ସାଧୁବାଦ ଜ୍ଞାପନ କରୁଛୁ। ସେ ଓଡ଼ିଶାର ସାଂସ୍କୃତିକ ଜୀବନର ଏକ ଅନ୍ଧକାରମୟ ଅଂଶରେ ଉଜ୍ଜ୍ୱଳ ଆଲୋକପାତ କରିଛନ୍ତି।" ତେବେ ସବୁଠାରୁ ବଡ଼କଥା ହେଉଛି ଏହି 'ପୁରୀ ପେଣ୍ଟିଙ୍ଗସ୍' ଗ୍ରନ୍ଥ ଉପରେ ଏକ ବିଶେଷ ସମୀକ୍ଷା ପ୍ରସ୍ତୁତ କରିଥିଲେ ଜର୍ମାନର କଳା-ଐତିହାସିକ ଏବରହାର୍ଡ ଫିସର, ଯେ କି ଭାରତୀୟ କଳା-ସଂସ୍କୃତି ଉପରେ ସେତେବେଳେ ଗବେଷଣା କାର୍ଯ୍ୟ ବଳବତ୍ତର

ରଖିଥିଲେ । ତାଙ୍କର ଆଲେଖ୍ୟର ଶିରୋନାମା ଥିଲା "An Important Contribution" । ଏହି ଦୀର୍ଘ ଆଲୋଚନାଟି ପ୍ରଥମେ 'ଆର୍ଟିବସ ଏସିଆ' (Artibus Asiae) ପତ୍ରିକାରେ ପ୍ରକାଶ ଲାଭ କରିଥିଲା, ଯାହାକି ସୁଇଜରଲାଣ୍ଡର ଏକ ପ୍ରତିଷ୍ଠିତ ପତ୍ରିକା । ଅନ୍ୟାନ୍ୟ ଆଲୋଚନା ବା ସମୀକ୍ଷା ମଧ୍ୟରେ କପିଳା ବାତ୍ସ୍ୟାୟନଙ୍କର From Temple to Playing-Card ଓ ମିଲୋସ୍ଲାଭ କ୍ରାସାଙ୍କର Basic and Valuable ପ୍ରଭୃତି ଅନ୍ୟତମ । ଏହି ଆଲେଖ୍ୟଗୁଡ଼ିକ କେବଳ ଜଗନ୍ନାଥ ପ୍ରସାଦଙ୍କୁ ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ କଳା-ସମାଲୋଚକ ଭାବରେ ଖ୍ୟାତି ପ୍ରଦାନ କରିଲାନାହିଁ; ପ୍ରକାରାନ୍ତରେ ସେହି ଅଖ୍ୟାତ ତଥା ଅଜଣା-ଅଶୁଣା ଗ୍ରାମ ରଘୁରାଜପୁରକୁ କେବଳ ସମଗ୍ର ଓଡ଼ିଶାରେ ନୁହେଁ, ଭାରତରେ ଓ ପାଶ୍ଚାତ୍ୟ ଜଗତରେ ବେଶ୍ ପରିଚିତ କରାଇଦେଲା । ଏବେ ତ କଟକ ବା ଭୁବନେଶ୍ୱରରୁ ପୁରୀ ଯିବା ବାଟରେ ଚନ୍ଦନପୁର ଛକର ବାମ ପାର୍ଶ୍ୱରେ ଏକ ବିରାଟ ଫଳକ ଶୋଭା ପାଉଛି, ଯେଉଁଥିରେ ଏକ ତୀର ଚିହ୍ନ ସହ ଇଂରାଜୀ ଅକ୍ଷରରେ ଲେଖା ଯାଇଛି : Way to Cult village Raghurajpur ।

ଆଜି ରଘୁରାଜପୁର ତା'ର ଚିତ୍ରକାରଙ୍କ ପାଇଁ ବିଶ୍ୱରେ ପ୍ରସିଦ୍ଧି ଅର୍ଜନ କରି ସାରିଲାଣି । ହେଲେ ଅତୀତରେ ଦିନ ଏମିତି ଥିଲା, ଯେତେବେଳେ ସେମାନେ ବଞ୍ଚିବାପାଇଁ ନିଜର କୌଳିକ ବୃତ୍ତିକୁ ତ୍ୟାଗ କରି ଅନ୍ୟତ୍ର ମୂଲ ଲାଗିବାକୁ ଚାଲିଯାଉଥିଲେ । ଏପରି କି ଯେଉଁ ଜଗନ୍ନାଥ ମହାପାତ୍ର ପଟଚିତ୍ରର ପୁଙ୍ଖାନୁପୁଙ୍ଖତାକୁ ଜଗନ୍ନାଥ ପ୍ରସାଦଙ୍କ ଗବେଷଣାକାଳରେ ଉନ୍ମୁକ୍ତ କରି ଦେଇଥିଲେ, ସେ ମଧ୍ୟ ସେତେବେଳେ ଅବସ୍ଥାଚକ୍ରରେ ପଡ଼ି ମୋହନ ସୁନ୍ଦର ଦେବ ଗୋସ୍ୱାମୀଙ୍କ ରାସଦଳରେ କାମ କରୁଥିଲେ । ସେହିଭଳି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ସେମାନଙ୍କୁ ଅବାଟରୁ ବାଟକୁ ପୁଣି ଫେରାଇ ଆଣିଥିଲେ ପାଶ୍ଚାତ୍ୟ ରମଣୀ ହାଲିନା ଜିଲି । ତାଙ୍କର ଉଦ୍ୟମ କେବେ ବିସ୍ମୃତ ହେବାର ନୁହେଁ । ଜଗନ୍ନାଥ ପ୍ରସାଦ ଗବେଷଣା କାଳରେ ଅନେକ ସମସ୍ୟାର ସମ୍ମୁଖୀନ ହୋଇଛନ୍ତି ଓ ସେହି ସମସ୍ୟାକୁ ସମାଧାନ କରିବାକୁ ଯାଇ ଏପରି ଅନେକ ଅନାବିଷ୍କୃତ ସତ୍ୟକୁ ଆବିଷ୍କାର ମଧ୍ୟ କରିଛନ୍ତି । ଏହି ଘଟଣାକୁ ସେ ବେଶ୍ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି 'ଗୋରା ଲୋକଙ୍କ ବୋଝ ଓ ଜିଲି ସାହେବାଣି' ପ୍ରବନ୍ଧରେ ।

'ପୁରୀ ପେଣ୍ଟିଙ୍ଗସ୍' ପରେ ପରେ ସେ ଓଡ଼ିଶାର ଚିତ୍ରକଳା ସଂପର୍କିତ ଅନ୍ୟାନ୍ୟ ବିଭବ ତାଳପତ୍ରପୋଥି ଓ ପୋଥିଚିତ୍ର ଉପରେ ମଧ୍ୟ କାମ କରିଛନ୍ତି ।

ସେ ସଂକ୍ରାନ୍ତରେ ତାଙ୍କର ଉଲ୍ଲେଖନୀୟ କୃତି ହେଉଛି : ୧୯୮୫ରେ ପ୍ରକାଶିତ 'ଚିତ୍ରପୋଥି : ଇଲଷ୍ଟ୍ରେଟେଡ ପାମଲିଫ ମାନୁସ୍କ୍ରିପ୍ଟସ ଫ୍ରମ ଓଡ଼ିଶା' (Chitrapothi : Illustrated Palm-leaf Manuscripts from Orissa / Published by : Lucas Book selling, Liverpool ଓ Arnold-Heinemann Publication, New Delhi) ଓ ୧୯୯୧ରେ ପ୍ରକାଶିତ 'ପାମଲିଫ୍ ମିନିଏଚରସ : ଦ ଆର୍ଟ ଅଫ୍ ରଘୁନାଥ ପୃଷ୍ଟି ଅଫ୍ ଓଡ଼ିଶା' (Palm-leaf Miniatures : The Art of Raghunath Prusti of Orissa / Published by: Abhinab Publications , New Delhi)। ପାମଲିଫ୍ ମିନିଏଚରସ ପୁସ୍ତକଟିର ଅନ୍ୟତମ ଯୁଗ୍ମ ଲେଖିକା ଥିଲେ ଜୋଆନ୍ନା ଉଇଲିଆମ୍ସ୍, ଯିଏକି ଜଗନ୍ନାଥ ପ୍ରସାଦଙ୍କୁ ପୁରୀ ପେଣ୍ଟିଙ୍ଗସ ଉପରେ କାମ କରିବାକୁ ଉତ୍ସାହ ପ୍ରଦାନ କରିଥିଲେ ଓ ନିଜେ "ତାଳପତ୍ର ପୋଥିଚିତ୍ର" ଉପରେ କାମ କରିଥିଲେ।

'ପୁରୀ ପେଣ୍ଟିଙ୍ଗସ' ଗ୍ରନ୍ଥରେ ରହିଥିଲା ପୁରୀର ଚିତ୍ରକାରମାନଙ୍କ ଚିତ୍ରସେବା ଜନିତ କାର୍ଯ୍ୟ ଓ ତାହାରି ମଧ୍ୟରେ ଆବଦ୍ଧ ସେମାନଙ୍କର ଜୀବନଶୈଳୀ। ମାତ୍ର ପରବର୍ତ୍ତୀ ପର୍ଯ୍ୟାୟର ପୁସ୍ତକଦ୍ୱୟରେ ରହିଥିଲା ଅଷ୍ଟାଦଶ ଶତାବ୍ଦୀର ସାହିତ୍ୟିକ ବାତାବରଣର ଚିତ୍ର, ଯେତେବେଳେ ତାଳପତ୍ର ମାଧ୍ୟମରେ କାବ୍ୟ ରଚନା କରିବା ଥିଲା ଓଡ଼ିଶାର ଏକ ସମୃଦ୍ଧ ପରଂପରା। ଏ ସଂପର୍କରେ ବିଶଦ ବ୍ୟାଖ୍ୟା ପ୍ରଦାନ କରିଛନ୍ତି ଜଗନ୍ନାଥ ପ୍ରସାଦ ଉକ୍ତ ପୁସ୍ତକମାନରେ। 'ଚିତ୍ରପୋଥି'ରେ ରହିଥିଲା ଓଡ଼ିଶାର ପାରଂପାରିକ ଚିତ୍ରାଂକନ କରିବାର ଅଦ୍ଭୁତ କଳା ସଂପର୍କିତ ଆଲୋଚନା। ଯେତେବେଳେ ଓଡ଼ିଶାରେ କାବ୍ୟ ରଚନାର ସ୍ୱର୍ଣ୍ଣଯୁଗ, ସେତେବେଳେ ତାଳପତ୍ର ପୋଥିରେ କାବ୍ୟ ସହିତ ରହୁଥିଲା କାବ୍ୟ-ବିଷୟ ଆଧାରିତ ଚିତ୍ରସମୂହ। ଏହି ପୁସ୍ତକରେ ଥିଲା ମୋଟ ୧୫ ଗୋଟି ଅଧ୍ୟାୟ। ଏହି ଗ୍ରଂଥରେ ପରିବେଷିତ ତଥ୍ୟ ପାଇଁ ଜଗନ୍ନାଥ ପ୍ରସାଦଙ୍କୁ ଭାରତ ଛଡ଼ା ଇଂଲଣ୍ଡ ଓ ଆମେରିକାର ମ୍ୟୁଜିୟମ ଉପରେ ନିର୍ଭର କରିବାକୁ ହୋଇଛି, ବହୁ କଳା-ସମାଲୋଚକଙ୍କ ସହିତ ଆଲୋଚନା କରିବାକୁ ପଡ଼ିଛି ଓ ବିଶେଷ କରି ଓଡ଼ିଆ ଓ ଇଂରାଜୀରେ ପ୍ରକାଶିତ ବହୁ ଗ୍ରଂଥ ଅଧ୍ୟୟନ କରିବାକୁ ପଡ଼ିଛି।

'ପାମଲିଫ୍ ମିନିଏଚର୍ସ' ଗ୍ରଂଥରେ ତାଙ୍କ ସହିତ ଅନ୍ୟତମ ସହଯୋଗୀ ରହିଥିଲେ ଜୋଆନ୍ନା ଉଇଲିଆମ୍ସ୍। ଏହି ଗ୍ରଂଥଟିର ମୁଖ୍ୟ ଆକର୍ଷଣ ରହିଥିଲା ଓଡ଼ିଶାର ଅନ୍ୟତମ ପୋଥି ଚିତ୍ରଶିଳ୍ପୀ ରଘୁନାଥ ପୃଷ୍ଟିଙ୍କର ଜୀବନ ଓ କୃତି ସଂପର୍କରେ

ବିଶେଷ ଆଲୋକପାତ କରିବା। ପୁସ୍ତକଟିରେ ରହିଛି ମୋଟ ୬ ଗୋଟି ଅଧ୍ୟାୟ। ଏହି ଅଧ୍ୟାୟମାନରେ ରହିଛି : (କ) ବ୍ୟକ୍ତି ଓ ଗାଥା (ଖ) ରଘୁନାଥ ପୃଷ୍ଟିଙ୍କ କୃତି (ଗ) ରଘୁନାଥ ପୃଷ୍ଟିଙ୍କ ସମୟ (ଘ) ପୃଷ୍ଟି ଓ ଅନ୍ୟାନ୍ୟ ତାଳପତ୍ର ଉଲ୍ଲେଖକାରୀ (ଙ) ସାହିତ୍ୟର ପ୍ରତିଫଳନ ଓ ଶେଷରେ (ଚ) ଗୃହ ଓ ପୃଥିବୀ। ସାହିତ୍ୟର ପ୍ରତିଫଳନ ଅଂଶରେ ମଧ୍ୟ ରହିଛି ଅନେକ ଲୋକପ୍ରିୟ କୃତି : ଗୀତଗୋବିନ୍ଦ, ଆର୍ତ୍ତତ୍ରାଣ ଚଉତିଶା, କୁଣ୍ଡଳୀ ଜଣାଣ, ଉଷାଭିଳାଷ, ଲାବଣ୍ୟବତୀ, ଶୋଭାବତୀ, ସଂଗୀତ ଦାମୋଦର ଓ ପ୍ରଶ୍ନ ଚୂଡ଼ାମଣି ପରି ଲୋକପ୍ରିୟ ତଥା ପ୍ରତିଷ୍ଠିତ କାବ୍ୟ-କବିତା। ରହିଛି ମଧ୍ୟ ଅନେକ ପୋଥିଚିତ୍ରର ପ୍ରତିଫଳନ। ଏହି ଗବେଷଣା କାର୍ଯ୍ୟରେ ସେ ଅନେକ ଲାଇବ୍ରେରୀ ଓ ମ୍ୟୁଜିଅମର ସାହାଯ୍ୟ ଗ୍ରହଣ କରିଛନ୍ତି। ସେମାନଙ୍କ ମଧ୍ୟରେ ପ୍ରମୁଖ ସ୍ଥାନଗୁଡ଼ିକ ହେଲା : ଓଡ଼ିଶା ଷ୍ଟେଟ୍ ମ୍ୟୁଜିଅମ୍, ନ୍ୟାସନାଲ ମ୍ୟୁଜିଅମ (ନୂଆଦିଲ୍ଲୀ), ଅରବିନ୍ଦ ସଂଗ୍ରହାଳୟ (ଉଦୟପୁର), ଓଡ଼ିଶା ଷ୍ଟେଟ୍ ଆର୍କାଇଭ, ଉତ୍କଳ ବିଶ୍ୱବିଦ୍ୟାଳୟ ଗ୍ରନ୍ଥାଗାର, ବ୍ରିଟିଶ ଲାଇବ୍ରେରୀ (ଲଣ୍ଡନ), ମ୍ୟୁଜିଅମ ରିଟବର୍ଗ (ସୁଇଜରଲ୍ୟାଣ୍ଡ), ଶାନ୍ତିନିକେତନ ଲାଇବ୍ରେରୀ, ନିଉୟର୍କ ପବ୍ଲିକ୍ ଲାଇବ୍ରେରୀ, ରଘୁନନ୍ଦନ ଲାଇବ୍ରେରୀ (ପୁରୀ) ଓ ଆଶୁତୋଷ ମ୍ୟୁଜିଅମ (କଲିକତା) ଇତ୍ୟାଦି। ଆଲୋଚକ ପ୍ରଫେସର ଗଣେଶ୍ୱର ମିଶ୍ର କୁହନ୍ତି, "ଜଣେ ପାରଂପାରିକ ପୋଥି-ଚିତ୍ରଶିଳ୍ପୀଙ୍କ ସଂପର୍କରେ ସର୍ବଭାରତୀୟ ପରିପ୍ରେକ୍ଷୀରେ ଏଭଳି ଗ୍ରନ୍ଥଟିଏ ବୋଧହୁଏ ପୂର୍ବରୁ ଲିଖିତ ହୋଇ ନଥିଲା।" ପ୍ରଖ୍ୟାତ ରାଜନୀତିଜ୍ଞ ତଥା ଐତିହାସିକ ଡକ୍ଟର ହରେକୃଷ୍ଣ ମହତାବ କୁହନ୍ତି, "ତାଙ୍କର ପୁସ୍ତକରେ କେବଳ ପୋଥିମାନଙ୍କରେ ଅଂକିତ ଚିତ୍ରାବଳି ଦିଆ ହୋଇନାହିଁ, ଏଥିସହ ଓଡ଼ିଆ ସାହିତ୍ୟର କ୍ରମବିକାଶର ମଧ୍ୟ ଆଲୋକପାତ କରାହୋଇଛି। + + + + ଓଡ଼ିଶାର କଳା ଓ ସାହିତ୍ୟକୁ ଡକ୍ଟର ଦାସ ଯେ ବିଶ୍ୱଲୋଚନକୁ ଆଣିଛନ୍ତି ଏଥିପାଇଁ ସେ ଧନ୍ୟବାଦାର୍ହ। ଓଡ଼ିଆ ଜାତି ତାଙ୍କଠାରେ କୃତଜ୍ଞ।"

ଓଡ଼ିଆ ଜାତି କେବଳ ଜଗନ୍ନାଥ ପ୍ରସାଦଙ୍କ ନିକଟରେ କୃତଜ୍ଞ ନୁହନ୍ତି; ଅଧିକନ୍ତୁ ଜଗନ୍ନାଥ ପ୍ରସାଦ ମଧ୍ୟ ତାଙ୍କ ଗବେଷଣାପାଇଁ ଯେଉଁ ପ୍ରମୁଖ ବ୍ୟକ୍ତିବିଶେଷ ଜଣକ ସକ୍ରିୟ ଭାବରେ ତାଙ୍କ ସମ୍ମୁଖରେ ନିଜର କଳାକୃତିର ରହସ୍ୟକୁ ଉନ୍ମୋଚନ କରିଥିଲେ ତାଙ୍କ ନିକଟରେ ମଧ୍ୟ ସେ କୃତଜ୍ଞ ରହିଛନ୍ତି ଓ ଉପଯୁକ୍ତ ସମ୍ମାନରେ ମଣ୍ଡିତ କରିବାକୁ ପ୍ରୟାସ କରିଛନ୍ତି। ସେ ବ୍ୟକ୍ତିବିଶେଷ ଜଣକ ହେଉଛନ୍ତି ରଘୁରାଜପୁରର ଜଗନ୍ନାଥ ମହାପାତ୍ର। ସେ ଜଗନ୍ନାଥ ପ୍ରସାଦଙ୍କୁ ପଟଚିତ୍ର ସଂକ୍ରାନ୍ତରେ

ବିଶେଷ ତଥ୍ୟ ପ୍ରଦାନ କରିବା ସଂଗେ ସଂଗେ ନିଜ ହାତରେ ଚିତ୍ରାଂକନ କରି ଚିତ୍ରାଂକନର କୌଶଳ ସହିତ ପରିଚିତ କରାଇଥିଲେ। ସେହି ବର୍ଷିୟାନ ଚିତ୍ରଶିଳ୍ପୀ ଶ୍ରୀଯୁକ୍ତ ଜଗନ୍ନାଥ ମହାପାତ୍ରଙ୍କୁ ଉପଯୁକ୍ତ ଦକ୍ଷିଣା ଦେବାପାଇଁ ତାଙ୍କର ଯେପରି ନିଷ୍ଠାପର ଉଦ୍ୟମର ଅନ୍ତ ନଥିଲା। ଜେପି ଯେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ ସଭ୍ୟ ରୂପେ କାର୍ଯ୍ୟ କରୁଥିଲେ ସେତେବେଳେ ସେ ସେହି ଅବସରକୁ ହାତଛଡ଼ା କଲେ ନାହିଁ। ବୟୋଜ୍ୟେଷ୍ଠ ଶିଳ୍ପୀ ଜଗନ୍ନାଥ ମହାପାତ୍ରଙ୍କୁ ସେ ୧୯୯୭ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ସମ୍ମାନସୂଚକ ଡି.ଲିଟ୍. ଉପାଧି ପ୍ରଦାନ କରାଇଥିଲେ। ପରବର୍ତ୍ତୀ କାଳରେ ମଧ୍ୟ ସେହି ଗାଁର ନିକଟବର୍ତ୍ତୀ ଦାଣ୍ଡଗାଁର ପଟ୍ଟଚିତ୍ର ଶିଳ୍ପୀ ଶ୍ରୀଯୁକ୍ତ ଅନନ୍ତ ମହାରଣାଙ୍କୁ ସମଗ୍ର ଦେଶର ଶ୍ରେଷ୍ଠତମ ଶିଳ୍ପୀ ଭାବରେ ୨୦୦୩ ମସିହାରେ ଶିଳ୍ପୀଗୁରୁର ସମ୍ମାନରେ ସମ୍ମାନିତ କରାଇଛନ୍ତି। ଏହା ଓଡ଼ିଶାପାଇଁ କିଛି କମ୍ ଗୌରବର କଥା ନୁହେଁ।

# ଊନବିଂଶ ଶତାବ୍ଦୀର ଐତିହାସିକ ଦସ୍ତାବିଜ୍ : ଉପନ୍ୟାସ 'ଦେଶ କାଳ ପାତ୍ର'

ଜଗନ୍ନାଥ ପ୍ରସାଦଙ୍କର ସମସ୍ତ ସାରସ୍ୱତ କୃତି ମଧ୍ୟରେ ରହିଛି ଗୋଟିଏ ମାତ୍ର ଉପନ୍ୟାସ, 'ଦେଶ କାଳ ପାତ୍ର'। ଏହାର ପ୍ରକାଶ କାଳ ହେଉଛି ୧୯୯୨ ମସିହା ଓ ପ୍ରକାଶକ ହେଉଛନ୍ତି ଦିଲ୍ଲୀର ପ୍ରାଚୀ ପ୍ରକାଶନ; ଯଦିଓ ୧୯୯୧ ମସିହା ବେଳକୁ ଏହାର ଆଂଶିକ ରୂପ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇ ପାଠକଙ୍କ ଦ୍ୱାରା ଆଦୃତ ହୋଇଥିଲା ଓ ଧାରାବାହିକ ରୂପରେ ପ୍ରକାଶ ହେବା ଉଚିତ ବୋଲି ପାଠକଙ୍କର ମତ ରହୁଥିଲା। ଏହିପରି ଏକ ମତ ରହିଛି ବିଶିଷ୍ଟ ଅନୁବାଦକ ଲକ୍ଷ୍ମୀନାରାୟଣ ମହାନ୍ତିଙ୍କର ଏକ ଚିଠିରେ, ଯାହାକି 'ପ୍ରିୟ ଜେପି' ପୁସ୍ତକର ପୃଷ୍ଠାରେ ସ୍ଥାନିତ ରହିଛି। ଏହି ଉପନ୍ୟାସ ପଛରେ ରହିଥିବା କାହାଣୀଟି କିନ୍ତୁ ଅତ୍ୟନ୍ତ ଚମତ୍କାର। ଜଗନ୍ନାଥ ପ୍ରସାଦ କୁହନ୍ତି ଯେ ଯେତେବେଳେ ସେ ଜୋଆନ୍ନା ଉଇଲିଆମ୍‌ସ୍‌ଙ୍କ ସହିତ ମିଶି ଓଡ଼ିଶାର ଜଣେ ଊନବିଂଶ ଶତାବ୍ଦୀର ଚିତ୍ରକର ରଘୁନାଥ ପୃଷ୍ଟିଙ୍କ ଉପରେ ଗବେଷଣା କରୁଥିଲେ, ସେତେବେଳେ ସେ ଊନବିଂଶ ଶତାବ୍ଦୀର ବିଭିନ୍ନ ଘଟଣା ସଂପର୍କରେ ଅବଗତ ହୋଇଥିଲେ ବିଭିନ୍ନ ଲାଇବ୍ରେରୀ ଓ ଆର୍କାଇଭରୁ ଓ ତାହା ତାଙ୍କୁ ସେତେବେଳେ ଅତ୍ୟନ୍ତ ଚିତ୍ତାକର୍ଷକ ମନେ ହୋଇଥିଲା। ତେଣୁ ସେ ତାହାକୁ ଶେଷ ପର୍ଯ୍ୟନ୍ତ ସାଇତି ରଖିଥିଲେ ଓ ଶେଷରେ ତାହାକୁ ନିଜର ଉପନ୍ୟାସ ରଚନାରେ ବ୍ୟବହାର କଲେ।

ପ୍ରାଥମିକ ପର୍ଯ୍ୟାୟରେ ଔପନ୍ୟାସିକ ଦାସ କିନ୍ତୁ ପରିକଳ୍ପନା କରିଥିଲେ ସତ୍ୟ ଓ କଳ୍ପନାକୁ ଆଧାର କରି ଉପନ୍ୟାସଟିଏ ଲେଖିବେ, ଯେପରି ଆମେରିକାନ

ଉପନ୍ୟାସ 'ରାଗ୍ ଟାଇମସ୍'। କିନ୍ତୁ ପରବର୍ତ୍ତୀ ପର୍ଯ୍ୟାୟରେ ସେ ଇତିହାସର ଘଟଣାଗୁଡ଼ିକର ନାଟକୀୟତାରେ ହଜିଗଲେ ଓ କଳ୍ପନାକୁ ତ୍ୟାଗ କରି ସଂପୂର୍ଣ୍ଣ ସତ୍ୟ ଉପରେ ନିଜର ଉପନ୍ୟାସକୁ ପର୍ଯ୍ୟବସିତ କଲେ। ଏଥିରେ ବିଭିନ୍ନ ତଥ୍ୟର ଉତ୍ସକୁ ଖୋଜିଲେ ହତାଶ ହେବାକୁ ପଡ଼େ, ତେବେ ଏହାକୁ କେବଳ ସାଧାରଣ ପାଠକ ଭାବରେ ପାଠକଲେ ଏହାର ରସକୁ ଉପଲବ୍ଧି କରିହେବ, ସେଥିରେ ସନ୍ଦେହ ନାହିଁ।

ଜଗନ୍ନାଥ ପ୍ରସାଦଙ୍କ ନାଟକ 'ସୁନ୍ଦର ଦାସ' (୧୯୯୩) ଯେପରି ବହୁ ଚରିତ୍ରର ସମାହାରରେ ରଚିତ, ଠିକ୍ ସେହିପରି ଏହି ଉପନ୍ୟାସଟିରେ ମଧ୍ୟ ବହୁ ଚରିତ୍ରଙ୍କ ଭିଡ଼। ଏକ ଐତିହାସିକ ଉପନ୍ୟାସରେ ଅନେକ ଚରିତ୍ର ଓ ଅନେକ ଘଟଣା ରହିବା ସ୍ୱାଭାବିକ କଥା। ଦେଶ କାଳ ପାତ୍ରର ଚରିତ୍ରମାନଙ୍କର ନାମ ଉଚ୍ଚାରଣ ହେବା ମାତ୍ରେ ସେମାନେ ଆମର ଅତ୍ୟନ୍ତ ଚିହ୍ନା ଚିହ୍ନା ମନେ ହୁଅନ୍ତି। ଯେମିତି : ଫକୀର ମୋହନ ସେନାପତି, ରାଧାନାଥ ରାୟ, ଗୌରୀଶଙ୍କର ରାୟ, ପ୍ୟାରୀମୋହନ ଆଚାର୍ଯ୍ୟ, ସାମନ୍ତ ଚନ୍ଦ୍ରଶେଖର, ମଧୁସୂଦନ ଦାସ, ରାଜା ରାମଚନ୍ଦ୍ର ଦେବ, ରାଜା ସୁଢ଼ଳ ଦେବ, ରେଭେନ୍ସା, ଜନ୍ ବିମସ ଓ ତତ୍କାଳୀନ ଓଡ଼ିଶାକୁ ବିଭିନ୍ନ ଦିଗରେ ନେତୃତ୍ୱ ପ୍ରଦାନ କରୁଥିବା ଅନେକ ପ୍ରତିଷ୍ଠିତ ବ୍ୟକ୍ତି। ଓଡ଼ିଶାର ଗଜପତି ମହାରାଜାଙ୍କର କ୍ଷମତା ହ୍ରାସ ସାଙ୍ଗକୁ ରହିଛି ସାମାଜିକ ଓ ସଂସ୍କୃତିକ ସ୍ତରରେ ଓଡ଼ିଶାର ମେରୁଦଣ୍ଡକୁ ଦୋହଲାଇ ଦେଇଥିବା ଦୁଇଟି ପ୍ରମୁଖ ଘଟଣା – 'ନଅଙ୍କ ଦୁର୍ଭିକ୍ଷ' ଓ 'ଭାଷା ସୁରକ୍ଷା ଆନ୍ଦୋଳନ'।

ଉପନ୍ୟାସର ଆରମ୍ଭ ହୋଇଛି ଚଳଚ୍ଚିତ୍ରର ଆରମ୍ଭ ପରି। ଚଳଚ୍ଚିତ୍ରରେ ଯେପରି ପ୍ରଥମେ ଘଟଣାର ଆରମ୍ଭ ହେବା ପୂର୍ବରୁ ସ୍କ୍ରିନ ଉପରେ ତାହାର ସ୍ଥାନ ଓ ସମୟ ଲେଖା ହୋଇଯାଏ, ଠିକ ଏହି ଉପନ୍ୟାସର ଆରମ୍ଭରେ ଲେଖା ଯାଇଛି: 'ପୁରୀ : ଡିସେମ୍ବର ୧୯୫୯' ଓ ତାହାପରେ 'ବିଲୁଆମାନେ ହଠାତ୍ ଭୁକିବାକୁ ଆରମ୍ଭ କରିଦେଲେ।' ଏ ଭଳି ବର୍ଣ୍ଣନା ସ୍ୱତଃ ଯୁଗପତ୍ ଆମ ଇନ୍ଦ୍ରିୟ ସମୂହକୁ ଚଳଚଞ୍ଚଳ କରିଦିଏ। ସଂପୂର୍ଣ୍ଣ କାବ୍ୟିକ ଓ ନାଟକୀୟ ଆବେଗ ରହିଛି ଉପନ୍ୟାସର ଗତିଶୀଳତାରେ। ଉପନ୍ୟାସର ଶେଷ ହୋଇଛି 'କଟକ : ୧୯୦୭'ରେ, ଯେଉଁଠି ଆମର କବିବର ରାଧାନାଥ ନିଜର ପାପର ପ୍ରାୟଶ୍ଚିତ ପାଇଁ ପୁତ୍ର ଶଶିଭୂଷଣଙ୍କ ମାଧ୍ୟମରେ ନିଜର ସ୍ୱୀକାରୋକ୍ତିକୁ ସର୍ବସାଧାରଣଙ୍କ ସମ୍ମୁଖକୁ ଆଣିଛନ୍ତି, ୨୫.୦୭.୧୯୦୭ରେ। ଉଭୟ ଆରମ୍ଭ ଓ ଅନ୍ତିମ ପର୍ଯ୍ୟାୟ ଅତ୍ୟନ୍ତ କରୁଣାତ୍ମକ।

ଏହି ଐତିହାସିକ ଉପନ୍ୟାସଟିରେ ସମସ୍ତ ଘଟଣା ଓ ଚରିତ୍ର ଐତିହାସିକ। ତେବେ ଜଗନ୍ନାଥ ପ୍ରସାଦ ଦୁଇଗୋଟି କାଳ୍ପନିକ ଚରିତ୍ରକୁ ନିଜର ଏହି ଉପନ୍ୟାସରେ ଜାଣିଶୁଣି ସ୍ଥାନ ଦେଇଛନ୍ତି, ଆମର ପ୍ରଥିତଯଶା ସାହିତ୍ୟିକଙ୍କୁ ସମ୍ମାନ ପ୍ରଦର୍ଶନ ପାଇଁ। ସେହି ଚରିତ୍ର ଦୁଇଟି ହେଉଛନ୍ତି 'ଗୋବିନ୍ଦ ସାମନ୍ତ', ଯାହାକୁ ପ୍ରୟୋଗ କରିଥିଲେ ଲାଲ ବିହାରୀ ଦେ ତାଙ୍କର 'ବେଙ୍ଗଲ ପେଜାଣ୍ଟ ଲାଇଫ'ରେ ଓ 'ପ୍ରଭୁଦୟାଲ' ଯାହାକୁ ପ୍ରୟୋଗ କରିଥିଲେ ଫକୀରମୋହନ ସେନାପତି ନିଜର 'ମାମୁଁ' ଉପନ୍ୟାସରେ।

ନିଜର ଗବେଷଣାରେ ମଗ୍ନ ରହିଥିବା ବେଳେ ଜଗନ୍ନାଥ ପ୍ରସାଦ ବହୁ ଲାଇବ୍ରେରୀ ଓ ଆର୍କାଇଭର ସାହାଯ୍ୟ ନେଉଥିଲେ ଊନବିଂଶ ଶତାବ୍ଦୀର ସମୟକୁ ଉପଲବ୍ଧି କରିବାପାଇଁ। ଯେପରି ନଅଙ୍କ ଦୁର୍ଭିକ୍ଷର କରାଳ ଦୃଶ୍ୟ ସଂପର୍କରେ କାଳୀ ଚରଣ ପଟ୍ଟନାୟକ ତାଙ୍କ 'ଭାତ' ନାଟକରେ ବା କାଳିନ୍ଦୀ ଚରଣ ପାଣିଗ୍ରାହୀ ତାଙ୍କର 'ମୁକ୍ତାଗଡ଼ର କ୍ଷୁଧା'ରେ ପ୍ରକାଶ କରିଥିଲେ ମଧ୍ୟ ସେଥିରେ ଅନେକ କାଳ୍ପନିକତା ରହିଥିଲା। ବାସ୍ତବ ଚିତ୍ରକୁ ଅନୁଧ୍ୟାନ କରିବାକୁ ଜେପିଙ୍କୁ ପଢ଼ିବାକୁ ହୋଇଥିଲା ଦୁର୍ଭିକ୍ଷ କମିଶନଙ୍କ ରିପୋର୍ଟ ଯାହା କଲିକତା ନ୍ୟାସନାଲ ଲାଇବ୍ରେରୀରୁ ତାଙ୍କୁ ଉପଲବ୍ଧ ହୋଇଥିଲା। ସେତେବେଳେ ସେ ଯେଉଁସବୁ ତଥ୍ୟକୁ ପଢ଼ିଥିଲେ ଓ ସଂଗ୍ରହ କରିଥିଲେ, ତାହା ତାଙ୍କୁ ଉପନ୍ୟାସ ପାଇଁ ଅନେକ ଖୋରାକ ଯୋଗାଇଥିଲା।

ଏହି ଉପନ୍ୟାସକୁ ନେଇ ପ୍ରାଥମିକ ପର୍ଯ୍ୟାୟରେ ଅନେକ ବାଦ-ବିସମ୍ବାଦର ଝଡ଼ ଉଠିଥିଲା, ଯାହା ସାଧାରଣତଃ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ହୋଇଥାଏ। ତେବେ ପରବର୍ତ୍ତୀ କାଳରେ ତାହାର ଲୋକପ୍ରିୟତା ନିକଟରେ ସେସବୁ ଏତେ ନିଷ୍ପ୍ରଭ ହୋଇ ଉଠିଲା ଯେ ତାହାକୁ ଆଉ କେହି ମନେ ମଧ୍ୟ ପକାଇ ପାରିଲେନାହିଁ। ଏହି କ୍ଷେତ୍ରରେ କେତେକ ବିଶିଷ୍ଟ ସାହିତ୍ୟିକଙ୍କ ମନ୍ତବ୍ୟକୁ ଏଠାରେ ଉପସ୍ଥାପିତ କରାଯାଇପାରେ। ଯେପରି:

(୧) "ଦେଶ କାଳ ପାତ୍ର ୧୯୯୨ର ଶ୍ରେଷ୍ଠ ଓଡ଼ିଆ ବହି।"

- ବିଭୂତି ପଟ୍ଟନାୟକ (ପ୍ରଗତିବାଦୀ / ୦୩.୦୧.୧୯୯୩)

(୨) "ଐତିହାସିକ ସୁଲଭ ସତ୍ୟନିଷ୍ଠା, ଶିଳ୍ପୀ ସୁଲଭ ପରିମିତି, ମାର୍ଜିତ ରୁଚି, ବିଷୟ ବିନ୍ୟାସର କଳା କୌଶଳ ଓ ଭାଷା ପ୍ରୟୋଗର ନୈପୁଣ୍ୟ ଯୋଗୁଁ

'ଦେଶ କାଳ ପାତ୍ର' ଓଡ଼ିଆ ସାହିତ୍ୟରେ ନୂତନ ପୁରୋଦୃଷ୍ଟି ଓ ରୂପଗନ୍ଧର ଏକ ସଫଳ ସାହିତ୍ୟକର୍ମ।"

- ଶ୍ରୀନିବାସ ମିଶ୍ର (ସମାଜ)

(୩) "ସୁଖବୋଧ ଇତିହାସ"

- ପ୍ରଫେସର ଖଗେଶ୍ୱର ମହାପାତ୍ର (ଝଂକାର / ଡିସେମ୍ବର, ୧୯୯୨)

(୪) "ଏହା ଏକ ବିରଳ ଫର୍ମ।"

- ମନୋଜ ଦାସ (ଏନ୍.ବି.ଟି. ନ୍ୟୁଜ୍ ଲେଟର / ଜୁଲାଇ, ୧୯୯୩) ଇତ୍ୟାଦି।

ତେବେ 'ଦେଶ କାଳ ପାତ୍ର' ସଂପର୍କରେ ଏକ ବିଶଦ୍ ଆଲୋଚନା ପ୍ରସ୍ତୁତ କରିଛନ୍ତି ପ୍ରଫେସର ଯତୀନ୍ଦ୍ର କୁମାର ନାୟକ। ଏହି ଆଲେଖ୍ୟଟି Book Review ରେ ପ୍ରକାଶିତ ହୋଇଥିଲା।

ଏହି ଉପନ୍ୟାସଟିର ପ୍ରକାଶ ଲାଭ ପରେ ଅନେକ ଚିଠି ଆସୁଥିଲା ଔପନ୍ୟାସିକଙ୍କ ନିକଟକୁ। ସେହି ଭଳି ଏକ ପତ୍ର ଦେଇଥିଲେ ଉପନ୍ୟାସର ଜଣେ ପାଠକ ଶ୍ରୀ ଧ୍ରୁବଚରଣ ପାଇକରାୟ। ସେଥିରେ ସେ ତାଙ୍କର ସନ୍ଦେହକୁ ଉପସ୍ଥାପିତ କରିଥିଲେ। ଯେପିର ଧରଣୀଧର ଡେପୁଟି କମିଶନର ଡସନଙ୍କୁ ହାତୀ ନା ଘୋଡ଼ା ଉପରେ ଭେଟିବାକୁ ଯାଇଥିଲେ ? କାରଣ ଫକୀର ମୋହନ ଘୋଡ଼ା ଲେଖିଥିବା ବେଳେ ଜଗନ୍ନାଥ ପ୍ରସାଦ ଲେଖିଥିଲେ ହାତୀ। ଜଗନ୍ନାଥ ପ୍ରସାଦ ତତ୍କ୍ଷଣାତ୍ ପାଠକଙ୍କ ସନ୍ଦେହ ମୋଚନ କରିଛନ୍ତି ଯେ ଯାହା ଦଲିଲରେ ଲେଖା ଯାଇଛି, ତାହାରି ଉପରେ ସେ ନିର୍ଭର କରି ଜନ୍ତୁଟିକୁ ହାତୀ ବୋଲି ଲେଖିଛନ୍ତି। ସେହିପରି ଜଣେ ପାଠକଙ୍କ ମନରେ ପ୍ରଶ୍ନ ଉଠିଛି ଯେ, ଉପନ୍ୟାସରେ ଲିଖିତ ଛଣଗିରି ପ୍ରକୃତରେ ଛଣଗିରି ନା ଛଣଘର ? ସେ ତାଙ୍କ  ସନ୍ଦେହର କାରଣ ମଧ୍ୟ ଦର୍ଶାଇଥିଲେ। ଜେପି ଉପନ୍ୟାସର ପରବର୍ତ୍ତୀ ସଂକଳନରେ ସେହି ଛଣଗିରି ସ୍ଥାନର ନାମକୁ ଛଣଘରରେ ପରିବର୍ତ୍ତନ କରିଛନ୍ତି। ତେଣୁ ଲେଖକ ଯେ ଅତ୍ୟନ୍ତ ପରିମାଣରେ ପାଠକଙ୍କୁ ମୌଳିକ ପ୍ରାଥମିକତା ପ୍ରଦାନ କରୁଥିଲେ, ଏଥିରେ ସନ୍ଦେହ ନାହିଁ।

ତେବେ ମୋଟ ଉପରେ ଏତିକି କହିହେବ ଯେ ଜଗନ୍ନାଥ ପ୍ରସାଦଙ୍କର ଉପନ୍ୟାସ 'ଦେଶ କାଳ ପାତ୍ର' ସେତେବେଳେ ସାଧାରଣ ଓଡ଼ିଆ ପାଠକମାନଙ୍କ

ପାଇଁ ଅତୀତ ଇତିହାସକୁ ସ୍ମରଣ କରିବା ଦିଗରେ ଏକାନ୍ତ ଉପାଦେୟ ପୁସ୍ତକ ଭାବରେ ପରିଗଣିତ ହେଇଥିଲା। କେବଳ ସେତିକି ନୁହେଁ, ବରଂ ତାହା ସହିତ ନାଟକ 'ସୁନ୍ଦର ଦାସ' ଓ ପ୍ରବନ୍ଧ 'ଗୋରାଲୋକଙ୍କ ବୋଝ ଓ ଜିଲି ସାହେବାଣି'କୁ ଏକତ୍ର ଯୋଡ଼ି ଯଦି ବିଚାର କରାଯାଏ, ତେବେ ତାହା କେବଳ ବର୍ତ୍ତମାନପାଇଁ ନୁହେଁ, ଆସନ୍ତା ଅନନ୍ତ ଭବିଷ୍ୟତ ପାଇଁ ମଧ୍ୟ ଏକ ଉପାଦେୟ ଐତିହାସିକ ଦସ୍ତାବିଜ୍ ରୂପେ କାର୍ଯ୍ୟ କରିବ, ଏଥିରେ ସନ୍ଦେହ ନାହିଁ।

# ସାହିତ୍ୟ ସଂପର୍କର ଆଦାନ ପ୍ରଦାନ : ମାଧ୍ୟମ ଅନୁବାଦ ଓ ସଂପାଦନା

ବିଶ୍ୱ ସାହିତ୍ୟ କ୍ଷେତ୍ରରେ ଅନୁବାଦ ଏକ ସ୍ୱତନ୍ତ୍ର ମାନ୍ୟତା ରକ୍ଷା କରେ। ଅନ୍ୟପକ୍ଷରେ ଏହା ହେଉଛି ସବୁଠାରୁ ବଡ଼ ଆୟାସସାଧ୍ୟ ବ୍ୟାପାର। ମୂଳ ଲେଖକର ଭାବକୁ ହୃଦୟଙ୍ଗମ କରି ତାହାକୁ ଅକ୍ଷୁଣ୍ଣ ଭାବରେ ନିଜ ଭାଷାକୁ ଆଣିବା ଏତେ ସହଜ କଥା ନୁହେଁ; ଅନ୍ୟପକ୍ଷରେ ନିଜ ଭାଷାର କୌଣସି ସାରସ୍ୱତ କୃତିକୁ ନିଜ ଦେଶର ଭାଷା ବା ଆନ୍ତର୍ଜାତିକ ସ୍ତରର ଭାଷା ମାଧ୍ୟମରେ ଅନ୍ୟମାନଙ୍କ ନିକଟରେ ଉପସ୍ଥାପିତ କରିବା ମଧ୍ୟ ଯଥେଷ୍ଟ ଦାୟିତ୍ୱ ଓ ଗୌରବର ମାନ୍ୟତା ରଖେ। ଏହିସବୁ ଦୃଷ୍ଟିକୋଣରୁ ଦେଖିବାକୁ ଗଲେ ଅନୁବାଦ ବିଭାଗଟି ବିଶ୍ୱ ପରିପ୍ରେକ୍ଷୀରେ ଆମ ଦେଶରେ ମଧ୍ୟ ଯଥେଷ୍ଟ ଆଦରର ଧନ ହୋଇଉଠିଛି। ଜଗନ୍ନାଥ ପ୍ରସାଦ କିନ୍ତୁ ଅନୁବାଦ କର୍ମକୁ ଉତ୍ତରାଧିକାର ସୂତ୍ରରେ ହାସଲ କରିଛନ୍ତି ନିଜ ପିତା ଶ୍ରୀଧର ଦାସଙ୍କଠାରୁ। ପିତା ଶ୍ରୀଧର ଦାସ ଥିଲେ ଜଣେ ଖ୍ୟାତନାମା ଅନୁବାଦକ। ସେ ଉଭୟ ଇଂରାଜୀ ଓ ସଂସ୍କୃତର ବିଶେଷ ଉପାଦେୟ ଗ୍ରନ୍ଥମାନଙ୍କୁ ଅତ୍ୟନ୍ତ ସରଳ ସାବଲୀଳ ଭାଷାରେ ଅନୁବାଦ କରିଥିଲେ ଆମ ଦେଶର ଛୋଟ ଛୋଟ ପିଲାମାନଙ୍କପାଇଁ, ଯାହା ଫଳରେ ଅତି ପିଲାଦିନୁ ଛାତ୍ର-ଛାତ୍ରୀମାନେ ବିଶ୍ୱ ସାହିତ୍ୟ ସହିତ ପରିଚିତ ହୋଇ ପାରୁଥିଲେ। ଏହି ଲେଖକ ମଧ୍ୟ ତା'ର ସ୍କୁଲ ଜୀବନରେ 'ଟମ କକାଙ୍କ କେବିନ'କୁ ପଢ଼ିଥିଲା ଓ ସେଥିରେ ବର୍ଣ୍ଣିତ ରହିଥିବା ଟପସି ଚରିତ୍ର ତାକୁ ଖୁବ୍ ବେଶୀ ପ୍ରଭାବିତ କରିଥିଲା। ଶ୍ରୀଧର ଦାସ ସର୍ବମୋଟ ୮୩ ଖଣ୍ଡ ଅନୁବାଦ ବହି ପ୍ରସ୍ତୁତ କରିଥିଲେ। ଜଗନ୍ନାଥ ପ୍ରସାଦ ତାଙ୍କ ପିତାଙ୍କ ପରି ପାଶ୍ଚାତ୍ୟ ଜଗତର ବା ପ୍ରାଚ୍ୟ ଜଗତର ବଡ଼ ବଡ଼ କ୍ଲାସିକକୁ ଅନୁବାଦ କରିବା ଦିଗରେ

ଯଦିଓ ମନ ବଳାଇ ନାହାନ୍ତି, ତେବେ ସମକାଳୀନ କୃତିକୁ ସର୍ବଭାରତୀୟ ସ୍ତରରେ ବା ଆନ୍ତର୍ଜାତିକ ସ୍ତରରେ ପହଞ୍ଚାଇବାକୁ ଉଦ୍ୟମ ଜାରି ରଖିଛନ୍ତି । ସେହି ଚେଷ୍ଟା ମଧ୍ୟରେ ଖେଳି ବୁଲିଛି ନିଜର କୃତି ସହିତ ଅନ୍ୟ ପ୍ରିୟଜନଙ୍କ କୃତି ସମୂହ ।

ଜଗନ୍ନାଥ ପ୍ରସାଦଙ୍କର ଓଡ଼ିଆ ଜ୍ଞାନ ପରି ଇଂରାଜୀ ଜ୍ଞାନ ମଧ୍ୟ ବଳିଷ୍ଠ । ତେଣୁ ତାଙ୍କୁ ଅନୁବାଦ କରିବା ଦିଗରେ ବିଶେଷ କଷ୍ଟର ସମ୍ମୁଖୀନ ହେବାକୁ ପଡ଼ିନାହିଁ । ପ୍ରଥମେ ସେ ନିଜ କୃତିର ଅନୁବାଦ ନିଜେ କରିଛନ୍ତି । ଏହି ମର୍ମରେ ତାଙ୍କର ପ୍ରଥମ ଅନୁବାଦ ହେଉଛି 'ନାଟକ ସୂର୍ଯ୍ୟାସ୍ତ ପୂର୍ବରୁ' । ଅନୂଦିତ ପୁସ୍ତକର ନାମ ହେଉଛି 'Before The Sunset' । ପ୍ରକାଶ କାଳ ୧୯୭୮ ମସିହା, ମୂଳ ନାଟକ ଲେଖାର ଠିକ୍ ଛଅ ବର୍ଷ ପରେ । ପରବର୍ତ୍ତୀ କାଳରେ ସେ ନିଜେ ତାଙ୍କର ପ୍ରାୟ ସବୁ ନାଟକକୁ ଅନୁବାଦ କରିଛନ୍ତି, କେବଳ 'ସବା ଶେଷ ଲୋକ' ଓ 'ସୁନ୍ଦର ଦାସ'କୁ ଛାଡ଼ି । ନାଟକ 'ସବା ଶେଷ ଲୋକ'କୁ ଅନୁବାଦ କରିଛନ୍ତି ଅନୁବାଦକ ରବି ବାସୱାନୀ ୧୯୮୪ ମସିହାରେ ଓ 'ସୁନ୍ଦର ଦାସ'କୁ ଅନୁବାଦ କରିଛନ୍ତି ଅନୁବାଦକ ପଲ-ସଁ-ପିଏ, କେ.କେ. ମହାପାତ୍ର ଓ ଲୀଳାବତୀ ମହାପାତ୍ର ୧୯୯୪ ମସିହାରେ । ପରେ ପରେ ସେ ନିଜର ଗଳ୍ପ ଓ କବିତାକୁ ମଧ୍ୟ ଅନୁବାଦ କରିଛନ୍ତି, ଯେପରି ଗଳ୍ପ କ୍ଷେତ୍ରରେ The Magic Deer and Other Stories (୧୯୮୩) ଓ The Forbidden Street and Other Stories (୧୯୮୮) ବା କବିତା କ୍ଷେତ୍ରରେ Love is a season (୧୯୭୮), Timescapes (୧୯୮୦), Silences (୧୯୮୯), Lovelines (୨୦୦୧), JP Das Poems (୨୦୦୪), Alimalika (୨୦୦୪) ଓ Dark Times (୨୦୦୫) । ସେ ପ୍ରଥମେ ଓଡ଼ିଆ ଲେଖକ ଭାବରେ ଓଡ଼ିଆରେ ଲେଖି ପରେ ତାକୁ କୌଣସି ଭାରତୀୟ ଭାଷାରେ ବା ଇଂରାଜୀ ଭାଷାରେ ରୂପାନ୍ତର କରି ତାକୁ ସାର୍ବଜନୀନ କରିବାକୁ ପ୍ରୟାସ କରନ୍ତି । ଏହି ମର୍ମରେ ତାଙ୍କର ପ୍ରାୟ ସମସ୍ତ କୃତି ବିଭିନ୍ନ ଭାରତୀୟ ଭାଷାରେ ଓ ବିଶେଷ କରି ଇଂରାଜୀ ଭାଷାରେ ଅନୂଦିତ ହୋଇ ସାର୍ବଜନୀନତା ଲାଭ କରିଛି ।

ଜଗନ୍ନାଥ ପ୍ରସାଦ ଦାସଙ୍କ ଇଂରାଜୀ ଅନୁବାଦ ଶୈଳୀ ଅତ୍ୟନ୍ତ ସରଳ ଓ ସାବଲୀଳ । କୌଣସିଠାରେ ଯେପରି ଭାଷାର କ୍ଲିଷ୍ଟତା ନଥାଏ, ସେହିପରି ପ୍ରତ୍ୟେକଟି ସ୍ତରରେ ହୃଦୟକୁ ସ୍ପର୍ଶ କରିବାକୁ ମଧ୍ୟ କ୍ଷମତା ରଖେ । ଯେହେତୁ ତାଙ୍କର ଅନେକ କବିତା ସଂକଳନ ଇଂରାଜୀ ଭାଷାରେ ଅନୂଦିତ ହୋଇ ସାରିଛି, ସମ୍ଭବତଃ ସେହି କାରଣରୁ ପ୍ରଫେସର ଏନ୍. ଦ୍ୱିବେଦୀ ତାଙ୍କ ସଂପାଦିତ 'ଇଣ୍ଡିଆନ୍ ପୋଏଟ୍ସ ଇନ୍

ଇଂଲିଶ୍'(ହାଇନେମ୍ୟାନ) ଗ୍ରନ୍ଥରେ ଜଗନ୍ନାଥ ପ୍ରସାଦଙ୍କୁ ଜଣେ ଭାରତୀୟ ଇଂରାଜୀ କବି ଭାବରେ ଗ୍ରହଣ କରିଛନ୍ତି ବୋଲି ପ୍ରଫେସର ଗଣେଶ୍ୱର ମିଶ୍ର ତାଙ୍କର 'ସୃଜନଯାତ୍ରା' ପୁସ୍ତକରେ ନିଜର ଅଭିମତକୁ ସାବ୍ୟସ୍ତ କରିଛନ୍ତି।(ସୃଜନଯାତ୍ରା / ପୃଷ୍ଠା: ୧ ୦ ୧ )

ଜଗନ୍ନାଥ ପ୍ରସାଦଙ୍କର ଅନେକ କବିତା ହିନ୍ଦୀ, ବଂଗଳା, ପଂଜାବୀ, କନ୍ନଡ, ଆସାମିୟା ଓ ଉର୍ଦ୍ଦୁ ଭାଷାରେ ଅନୂଦିତ ହୋଇ ସାରିଛି। କେବଳ କବିତା କାହିଁକି, ନାଟକ, ଗଳ୍ପ ଓ ଉପନ୍ୟାସ ଇତ୍ୟାଦିର ମଧ୍ୟ ଅନୁବାଦ ହୋଇଛି। ସବୁଠାରୁ ବଡ଼କଥା ହେଉଛି ଯେ ତାଙ୍କ ସୃଷ୍ଟିର ଅନୁବାଦ ବେଳେ ସେହି ସେହି ଭାଷାର ଜଣେ ଜଣେ ପ୍ରଥିତଯଶା ସମାଲୋଚକ ଉକ୍ତ  ଗ୍ରନ୍ଥର ମୁଖବନ୍ଧରେ ସେହି ଅନୁବାଦ ସଂପର୍କରେ ଆଲୋଚନା କରିବା ପ୍ରସଙ୍ଗରେ ଜେପିଙ୍କୁ ସେମାନଙ୍କ ଭାଷାର ପାଠକମାନଙ୍କ ନିକଟରେ ପହଞ୍ଚାଇବାର ଉଦ୍ୟମ କରିଛନ୍ତି। ଏହିଥିରୁ ଜଣାପଡ଼େ ଯେ ଜଗନ୍ନାଥ ପ୍ରସାଦଙ୍କୁ କିପରି ଆମ ଭାଷା ସାହିତ୍ୟ ଛଡ଼ା ଅନ୍ୟମାନେ କିପରି ଜାଣନ୍ତି ଓ ତାଙ୍କ କୃତିକୁ ସେମାନଙ୍କ ଭାଷାର ପାଠକମାନଙ୍କ ନିକଟରେ କିପରି ପହଞ୍ଚାଇବାକୁ ଉଦ୍ୟମ କରାଯାଇଛି। ସେହି ମୁଖବନ୍ଧଗୁଡ଼ିକ 'ମୁଖଶାଳା' ଶିରୋନାମାରେ ଓଡ଼ିଆରେ ଅନୂଦିତ ହୋଇ ବର୍ତ୍ତମାନ ଓଡ଼ିଆ ପାଠକମାନଙ୍କ ନିକଟରେ ଉପଲବ୍ଧ ହୋଇ ପାରିଛି। ସେସବୁକୁ ଓଡ଼ିଆରେ ଅନୁବାଦ କରିଛନ୍ତି ଏହି ଗ୍ରନ୍ଥର ଲେଖକ ଓ ପ୍ରକାଶ କରିଛନ୍ତି 'ଇଂକ୍ ଓଡ଼ିଶା', ଭୁବନେଶ୍ୱର।

ଜଗନ୍ନାଥ ପ୍ରସାଦ ଯେ କେବଳ ନିଜର ଲେଖାକୁ ନିଜେ ଅନୁବାଦ କରିଛନ୍ତି ବା ଅନୁବାଦ ହେବାପାଇଁ ଉଦ୍ୟମ କରିଛନ୍ତି ତାହା ନୁହେଁ, ବରଂ ଅନ୍ୟମାନଙ୍କ ଲେଖାକୁ ମଧ୍ୟ ଅନୁବାଦ କରିଛନ୍ତି ଓ ସଂପାଦନା ମଧ୍ୟ କରିଛନ୍ତି। ଏହି ସୂତ୍ରରେ ଆମେ ପାଉ ଫରାସୀ କବି କ୍ୟାଥରିନ କ୍ଲୋମାଙ୍କ କବିତାର ଇଂରାଜୀ ଅନୁବାଦ 'Growing An Indian Star '(୧୯୯୧) ବା ଆମ ଭାରତୀୟ କବି ଗୁଲଜାରଙ୍କର ଉର୍ଦ୍ଦୁ କବିତାର ଅନୁବାଦ 'Autumn Moon' (୧୯୯୯) ଭାବରେ। ଫରାସୀ କବିତାର ଅନୁବାଦ କାଳରେ ଏକଦା ଶିକ୍ଷା ଲାଭ କରିଥିବା ଫ୍ରେଞ୍ଚ ଭାଷା ତାଙ୍କର ଯେପରି କାମରେ ଆସିଥିଲା, ଅନୁରୂପ ଭାବରେ ଉର୍ଦ୍ଦୁ ଶବ୍ଦର ଅର୍ଥପାଇଁ ଗୁଲଜାରଙ୍କ ଅକୁଣ୍ଠିତ ସହଯୋଗ ତାଙ୍କ ଅନୁବାଦ କାର୍ଯ୍ୟକୁ ବେଶ୍ ତ୍ୱରାନ୍ୱିତ କରିଥିଲା। ଆମ ଓଡ଼ିଶାର ନାରୀ କବିମାନଙ୍କର କବିତାକୁ ନେଇ ମଧ୍ୟ ସେ Arlene Zideଙ୍କ ସହିତ ମିଶି ଅନୁବାଦ କରିଛନ୍ତି ଅନେକ କବିତା, ଯାହାକି 'Under a

Silent Sun' ଗ୍ରନ୍ଥ ଭାବରେ ୧୯୯୨ ମସିହାରେ ପ୍ରକାଶିତ ହୋଇଛି। ଏକକ ଲେଖକଙ୍କ କବିତାକୁ ମଧ୍ୟ ସେ ଅନୁବାଦ କରିଛନ୍ତି। ଯେପରି ବାସୁଦେବ ସୁନାନୀଙ୍କର କେତେକ ନିର୍ବାଚିତ ଓଡ଼ିଆ କବିତାକୁ ସେ ନିଜେ ଇଂରାଜୀରେ ଅନୁବାଦ କରିଛନ୍ତି, ଯାହାକି 'Cast Out' ଶିରୋନାମାରେ ୨୦୦୮ ମସିହାରେ ଲୋକଲୋଚନକୁ ଆସି ସାରିଛି। ତାଙ୍କର ଆଉ ଗୋଟିଏ ଅନୁବାଦ ହେଲା ଓଡ଼ିଆ ନାରୀ କବିଙ୍କ କବିତାର ଅନୁବାଦ 'In other words' ଯାହାକି ୨୦୧୮ ମସିହାରେ ଅଥର୍ସ ପ୍ରେସ, ନୂଆଦିଲ୍ଲୀଙ୍କ ଦ୍ୱାରା ପ୍ରକାଶ ଲାଭ କରିଥିଲା।

କେବଳ ଅନୁବାଦ କାହିଁକି ସଂପାଦନା କ୍ଷେତ୍ରରେ ଜଗନ୍ନାଥ ପ୍ରସାଦଙ୍କର ଉଦ୍ୟମ ମଧ୍ୟ ପ୍ରଶଂସନୀୟ। ତାଙ୍କର ସଂପାଦନା କ୍ଷେତ୍ରରେ 'Oriya Short Stories' ହେଉଛି ଏକ ଉଲ୍ଲେଖନୀୟ କୃତି। ଏହି ସଂକଳନରେ ଓଡ଼ିଆ କଥା ସାହିତ୍ୟର ଜନକ ଫକୀରମୋହନ ସେନାପତି, ଗୋଦାବରୀଶ ମହାପାତ୍ରଙ୍କ ଠାରୁ ଆରମ୍ଭ କରି ଅତ୍ୟାଧୁନିକ ସମୟର ଗାଳ୍ପିକ ଜଗଦୀଶ ମହାନ୍ତିଙ୍କ ଗଳ୍ପକୁ ଚୟନ କରାଯାଇଛି ଓ ଏହା ୧୯୮୩ ମସିହାରେ ବିକାଶ ପବ୍ଲିଶିଙ୍ଗ୍ ହାଉସ, ନୂଆଦିଲ୍ଲୀ ଦ୍ୱାରା ପ୍ରକାଶିତ ହୋଇଛି। ଜେପିଙ୍କ ସଂପାଦିତ ଅନ୍ୟ ଏକ କୃତି ହେଲା ଭାରତୀୟ କବିଙ୍କ କବିତାର ଇଂରାଜୀ ଅନୁବାଦ 'Kavita 93'। ଏହି ପୁସ୍ତକରେ ଜେପିଙ୍କ ସହିତ କେ. ସଚ୍ଚିଦାନନ୍ଦନ ମଧ୍ୟ ସଂପାଦନା ଦାୟିତ୍ୱ ନିର୍ବାହ କରିଥିଲେ ଓ ଏହା ୧୯୯୪ ମସିହାରେ ଭିର୍ଗୋ ପବ୍ଲିକେଶନସ, ନୂଆଦିଲ୍ଲୀଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା।

ଏହିସବୁ ଦୃଷ୍ଟିକୋଣରୁ ଦେଖିବାକୁ ଗଲେ ଜଗନ୍ନାଥ ପ୍ରସାଦ ଅନୁବାଦ ଓ ସଂପାଦନା କ୍ଷେତ୍ରରେ ନିଜର ଉଜ୍ଜ୍ୱଳ ସ୍ୱାକ୍ଷର କେବଳ ଛାଡ଼ି ଦେଇ ନାହାନ୍ତି, ପ୍ରକାରାନ୍ତରେ ଆମ ଓଡ଼ିଆ ଭାଷା ସାହିତ୍ୟକୁ ଓ କେତେକାଂଶରେ ଆମ ଭାରତୀୟ ସାହିତ୍ୟକୁ ମଧ୍ୟ ସର୍ବଭାରତୀୟ ସ୍ତରକୁ ବା ଆନ୍ତର୍ଜାତିକ ସ୍ତରକୁ ଉତ୍ତୀର୍ଣ୍ଣ କରାଇବା ପାଇଁ ନିଜର ଚେଷ୍ଟାକୁ ଅବ୍ୟାହତ ରଖିଛନ୍ତି; ଯାହା ଚିରକାଳ ଲାଗି ଅଭୁଲା ହୋଇ ରହିବା ସଂଗେ ସଂଗେ ଭବିଷ୍ୟତ ପିଢ଼ିକୁ ମଧ୍ୟ ଏହି ଦିଗରେ ପରିଚାଳିତ ହେବାପାଇଁ ଅଦମ୍ୟ ଉତ୍ସାହ ପ୍ରଦାନ କରିବ, ଏଥିରେ ସନ୍ଦେହ ନାହିଁ।

# ମାଧ୍ୟମ ଅନାବଶ୍ୟକ : ଏଣିକି ନିଜେ ହିଁ କହିବେ ନିଜର କଥା

ପୂର୍ବରୁ ଜଗନ୍ନାଥ ପ୍ରସାଦଙ୍କ ବ୍ୟକ୍ତିତ୍ୱର ଆକଳନ କ୍ଷେତ୍ରରେ କୁହାଯାଇଛି ଯେ ସେ ବ୍ୟକ୍ତିଗତ ସ୍ତରରେ ହେଉଛନ୍ତି ଯେତିକି ଅନ୍ତର୍ମୁଖୀ, ତାଙ୍କର ସାରସ୍ୱତ କୃତିରେ ସେ ହେଉଛନ୍ତି ସେତିକି ବହିର୍ମୁଖୀ। କବିତାରେ ସେ ଯେପରି ପ୍ରଥମ ପୁରୁଷ (First Person)ରେ ରହି ତାଙ୍କ ପାଠକଙ୍କ ସହିତ କଥୋପକଥନ କରନ୍ତି, ଗଳ୍ପରେ ମଧ୍ୟ ଠିକ୍ ସେହିପରି ଢଙ୍ଗରେ ସେ ପାଠକମାନଙ୍କ ସହିତ ସମ୍ମୁଖୀନ ହୋଇ ସେମାନଙ୍କ ଆଗରେ କିଛି କହିଚାଲନ୍ତି। 'ମୁଁ'ର ସତ୍ତା କିନ୍ତୁ ସବୁଠି କୌଣସି ନା କୌଣସି ଚରିତ୍ର ମାଧ୍ୟମରେ ଆସି ଉପନୀତ ହୋଇଥାନ୍ତି। ତେବେ ସେ ସିଧାସଳଖ ଭାବରେ କିଛି କୁହନ୍ତି ନାହିଁ; ଯେଉଁଠି ବା ଯେଉଁ ପରିସ୍ଥିତି ତାଙ୍କୁ ଅସହ୍ୟ ମନେହୁଏ, ସେଠାରେ ସେ କବିତା ହେଉ ବା ଗଳ୍ପ କି ନାଟକ ମାଧ୍ୟମରେ କିଛି କହିବାକୁ ଚାହାନ୍ତି। ସମ୍ଭବତଃ ସେହି କାରଣରୁ ସେ ନିଜର କୌଣସି କୃତି ସଂପର୍କରେ କିଛି କହିବାକୁ ଚାହାନ୍ତି ନାହିଁ। ପାଠକ ସେଥିରୁ ଯେତିକି ବୁଝିଲା, ତା' ପାଇଁ ଲେଖକର ସେତିକି ହିଁ ବକ୍ତବ୍ୟ। ଲେଖକ ଜଗନ୍ନାଥ ପ୍ରସାଦଙ୍କ ଏହିପରି ବକ୍ତବ୍ୟକୁ ଏଠାରେ ସ୍ମରଣ କରାଯାଇପାରେ। ସେ କୁହନ୍ତି, "କୌଣସି ଲେଖକ କେବେହେଲେ ନିଜର ଲେଖାକୁ ବୁଝାଇ ପାଠକ ବା ସମାଲେଚକଙ୍କୁ ସନ୍ତୁଷ୍ଟ କରିପାରି ନାହାନ୍ତି। ଲେଖାଟି ପ୍ରକାଶିତ ହେବାପରେ ତା' ସର୍ବସାଧାରଣଙ୍କ ସମ୍ପତ୍ତି, ସେଥିରୁ ସେ ଯେତିକି ପାଇଲା ତାର ପ୍ରାପ୍ୟ ସେତିକି।"

ପରବର୍ତ୍ତୀ କାଳରେ କିନ୍ତୁ ଜଗନ୍ନାଥ ଯେତେବେଳେ ତରୁଣ ସ୍ରଷ୍ଟାଙ୍କ କଥା ଭାବିଛନ୍ତି, ସେତେବେଳେ ସେ ତାଙ୍କପରି ପ୍ରବୀଣମାନେ ସେମାନଙ୍କ ପାଇଁ ବାଟ ଛାଡ଼ିଦେବା ହିଁ ଶ୍ରେୟସ୍କର ବୋଲି ମନେ କରିଛନ୍ତି। କାରଣ ପ୍ରବୀଣମାନେ

ଯେତେବେଳ ପର୍ଯ୍ୟନ୍ତ ସାହିତ୍ୟ ଲେଖି ପତ୍ରିକାର ପୃଷ୍ଠାକୁ ଅକ୍ତିଆର କରୁଥିବେ, ସେତେବେଳ ପର୍ଯ୍ୟନ୍ତ ପ୍ରକାଶକମାନେ କେବଳ ପ୍ରବୀଣଙ୍କ ପଛରେ ପଡ଼ିଥିବେ ଓ ତରୁଣମାନଙ୍କୁ ଅଣଦେଖା କରି ଚାଲିଥିବେ। ତେବେ ପ୍ରଶ୍ନ ହେଉଛି ଯେ ଏଣିକି ପ୍ରବୀଣମାନେ କରିବେ କ'ଣ? ଜଗନ୍ନାଥ ପ୍ରସାଦ ଦାସ ସେ ସଂକ୍ରାନ୍ତରେ ତାହାର ଏକ ଚଟୁଳ ପ୍ରସ୍ତାବ ରଖିଛନ୍ତି। ସେ ପ୍ରବୀଣ ବା ବରିଷ୍ଠମାନଙ୍କୁ 'ବୟସ୍କ' ବୋଲି ସମ୍ବୋଧନ କରି କହିଛନ୍ତି, "ସୌଭାଗ୍ୟବଶତଃ ସେମାନଙ୍କପାଇଁ ସାହିତ୍ୟରେ ଅନେକ ମର୍ଯ୍ୟାଦାପୂର୍ଣ୍ଣ କାମ ରହିଛି। ବୟସ୍କ ଲେଖକମାନେ ନିଜର ନୀରସ ଆତ୍ମଜୀବନ ଚରିତ ଲେଖିବେ ଓ ଧାର୍ମିକ ପ୍ରବଚନ ଦେବେ। ବୟସ୍କ ଲେଖକମାନେ ପୁସ୍ତକର ଲୋକାର୍ପଣ କରିବେ। ସେମାନେ ସାହିତ୍ୟିକ ଅନୁଷ୍ଠାନମାନଙ୍କରେ ପୁରସ୍କାର ବିତରଣୀ ଇତ୍ୟାଦିରେ ପୌରୋହିତ୍ୟ କରିବେ। ଆଉ ମଧ୍ୟ ସେମାନେ ଯାଇ ସାହିତ୍ୟ ଉତ୍ସବକୁ ଉଦ୍‌ଘାଟନ କରିବେ।"

ଜଗନ୍ନାଥ ପ୍ରସାଦ ଦାସ ଆଉ ଏଣିକି କବିତା, ଗଳ୍ପ ବା ନାଟକ ମାଧ୍ୟମରେ କିଛି କହିବାକୁ ଚାହୁନାହାନ୍ତି। ସେ ଅନୁଭବ କଲେଣି ଯେ ସେ ଆଜି ବୟସ୍କ ହୋଇ ଉଠିଛନ୍ତି। ତେଣୁ ସେ ଯାହା ଅନ୍ୟଙ୍କୁ ପରାମର୍ଶ ଦେଇଛନ୍ତି, ତାହାକୁ ମଧ୍ୟ ତିଳେ ତିଳେ ପାଳନ କରିବାରେ ଲାଗି ରହିଛନ୍ତି। ସେ ଏଣିକି ଯେଉଁ ସଭାକୁ ଭାଷଣ ଦେବାକୁ ନିମନ୍ତ୍ରିତ ହୋଇ ଯାଉଛନ୍ତି ଓ ସେଠାରେ ନିଜର ଅଭିଭାଷଣ ରଖୁଛନ୍ତି, ତାହାକୁ ସେ ଲିଖିତାକାରରେ କରୁଛନ୍ତି। ଅବଶ୍ୟ ଏ ଅଭ୍ୟାସ ତାଙ୍କର ପିଲାବେଳୁ ରହିଥିଲା। ଝଂକାରର ବିଷୁବମିଳନରେ ଯେତେବେଳେ ଯୁବ ଲେଖକମାନଙ୍କୁ ବକ୍ତାଭାବରେ ନିମନ୍ତ୍ରଣ କରାଯିବା କ୍ରମରେ ସେ ସେଠାକୁ ଯାଇ ନିଜର ଅଭିଭାଷଣ ଉପସ୍ଥାପିତ କରିଛନ୍ତି, ସେତେବେଳେ ସେ ଲିଖିତାକାରରେ ତାହାକୁ ସଂପନ୍ନ କରିଛନ୍ତି। ସେଦିନର ଅଭ୍ୟାସ ଏ ଯାବତ୍ ଅପରିବର୍ତ୍ତିତ ରହିଛି। ସେ ନିଜର ଅଭିଭାଷଣରେ ପ୍ରତ୍ୟକ୍ଷ ଭାବରେ ନିଜର ଆବେଗକୁ ସମସ୍ତଙ୍କ ସମ୍ମୁଖରେ ଉପସ୍ଥାପିତ କରିବାର ସୁଯୋଗ ପାଇଛନ୍ତି ଓ ସେ ତାହାର ସଦ୍‌ବ୍ୟବହାର କରିଛନ୍ତି। ପରବର୍ତ୍ତୀ କାଳରେ ତାଙ୍କର ସମସ୍ତ ଚିନ୍ତାଧାରା ଓ ବକ୍ତବ୍ୟକୁ ଧରି ରଖିଥିବା ଅଭିଭାଷଣଗୁଡ଼ିକ ଯେତେବେଳେ ଗ୍ରଂଥ ଭାବରେ ପ୍ରକାଶିତ ହୋଇଛି, ସେତେବେଳେ ତାହା ଆମ ଓଡ଼ିଆ ସାହିତ୍ୟପାଇଁ କହିବାକୁ ଗଲେ ଅନେକ ମାର୍ଗକୁ ପ୍ରଶସ୍ତ କରି ଦେଇଛି। ସେହିସବୁ ପୁସ୍ତକମାନଙ୍କ ମଧ୍ୟରେ ଇଂରାଜୀରେ ଲେଖା ହୋଇଥିବା Reflection on Literature and Culture ଗ୍ରନ୍ଥ ଓ ଓଡ଼ିଆରେ

ଲେଖାଯାଇଥିବା 'ଆମେ ଓଡ଼ିଆ ଆମର ଓଡ଼ିଶା' ଓ 'ଆମ ଭାଷା ଆମ ସଂସ୍କୃତି' ଅନ୍ୟତମ।

ଜଗନ୍ନାଥ ପ୍ରସାଦ ଏଣିକି ବଦ୍ଧପରିକର ଭାବେ ଯେ କେବଳ ଯେଉଁଠିକୁ ଆମନ୍ତ୍ରିତ ହୋଇ ଯାଉଛନ୍ତି ବା ଯେଉଁଠି ଯାହା ନିଜର ଭାବନାକୁ ନିଜର ଅଭିଭାଷଣରେ ପ୍ରକାଶ କରୁଛନ୍ତି, ତାହାକୁ ପ୍ରଥମେ ଲିଖିତାକାରରେ ଓ ପରେ ପୁସ୍ତକାକାରରେ ପ୍ରକାଶ କରିଛନ୍ତି ତାହା ନୁହେଁ, ସେ ଯେତେବେଳେ ନିଜେ କବିତା, ଗଳ୍ପ ବା ନାଟକ ରଚନାରେ ମଗ୍ନ ରହିଥିଲେ ବା ସରକାରଙ୍କର ଏକ ଦାୟିତ୍ୱ ସଂପନ୍ନ ଚାକିରିକୁ ନିର୍ବାହ କରୁଥିଲେ, ସେତେବେଳେ ମଧ୍ୟ ସେ ନିଜେ ସାହିତ୍ୟ ପାଇଁ ଯାହା ଠିକ୍ ବୋଲି ମନେ କରୁଥିଲେ ତାହାକୁ ସଂପନ୍ନ କରିବାକୁ ଯାଇ ବିଭିନ୍ନ କଳାକାରଙ୍କୁ ସାହାଯ୍ୟର ହାତ ସଂପ୍ରସାରିତ କରି ଦେଉଥିଲେ ଓ ନିଜର ସାଧ୍ୟମତେ ସେମାନଙ୍କୁ ସାହାଯ୍ୟ କରି ପ୍ରକାରାନ୍ତରେ ସାହିତ୍ୟ ସେବା କରି ଆନନ୍ଦ ପାଉଥିଲେ। ଏହିଭଳି କିଛି ଦୃଷ୍ଟାନ୍ତକୁ ଏଠାରେ ଉପସ୍ଥାପିତ କରାଯାଇପାରେ। ଯେପରି:

(୧) ଘଟଣାଟି ହେଉଛି ପ୍ରାୟ ୧୯୬୧ ମସିହାର ଆରମ୍ଭ ବେଳର, ଜାନୁଆରୀ-ଫେବୃୟାରୀ ମାସର। ଚଳଚ୍ଚିତ୍ର ନିର୍ମାତା ଘନଶ୍ୟାମ ମହାପାତ୍ର 'ମା ଓ ଶିଶୁ' ନାମକ ଏକ ପ୍ରାମାଣିକ ଚଳଚ୍ଚିତ୍ର ନିର୍ମାଣ କରିବାକୁ ଇଛା  କରି ସେ ଦିଗରେ କିଛି କାମ କରିଥିଲେ ଓ ତାହାର ଅନୁମୋଦନ ପାଇଁ ସ୍ୱାସ୍ଥ୍ୟ ବିଭାଗର ନିର୍ଦ୍ଦେଶକଙ୍କ ନିକଟରେ ଉପସ୍ଥାପିତ କରିଥିଲେ ଓ ପରେ ପରେ ତାହା ସରକାରଙ୍କ ଅନୁମୋଦନ ପାଇଁ ନିର୍ଦ୍ଦିଷ୍ଟ ବିଭାଗକୁ ପଠାଯାଇଥିଲା। ମାତ୍ର ଦୁଃଖର କଥା ଯେ ସେହି ପ୍ରକଳ୍ପଟି ଯୁଗ୍ମ ସଚିବଙ୍କ ଦ୍ୱାରା ନାକଚ କରାଯାଇଥିଲା। ନାକଚ ହେବାର କାରଣ ସ୍ୱରୂପ ଦର୍ଶାଇ ଦିଆ ଯାଇଥିଲା ଯେ ସେପରି ପ୍ରକଳ୍ପପାଇଁ ସରକାର କିଛି ଘୋଷଣା କରି ନଥିଲେ କି ଟେଣ୍ଡର ମଧ୍ୟ ଆହ୍ୱାନ କରିନଥିଲେ। ସରକାରୀ ସ୍ତରରେ ଏଭଳି ନିଷ୍ପତ୍ତି ଚଳଚ୍ଚିତ୍ର  ନିର୍ମାତାଙ୍କୁ ବହୁତ ଦୁଃଖ ଦେଇଥିଲା। ସେତିକି ବେଳେ ସେ ଅର୍ଥବିଭାଗର ସଚିବଙ୍କୁ ଦେଖା କରିବାକୁ ମନସ୍ଥ କରି ତାଙ୍କ ନିକଟକୁ ଅନେକ ଆଶା  ନେଇ  ଯାଇଥିଲେ।

ସେତେବେଳେ ଅର୍ଥ ବିଭାଗର ଅଣ୍ଡର ସେକ୍ରେଟାରୀ ଥାଆନ୍ତି ଜଗନ୍ନାଥ ପ୍ରସାଦ। ସେ ସେହି ଫାଇଲକୁ ଦେଖି ଉତ୍କଣ୍ଠିତ ହେଲେ ଜାଣିବାପାଇଁ ଯେ କେଉଁ କାରଣରୁ ତାହା ପ୍ରତ୍ୟାଖ୍ୟାତ ହେଲା। ଏବଂ ଶେଷରେ ସେ ସଂପୂର୍ଣ୍ଣ ଫାଇଲକୁ

ପଢ଼ି ସିଦ୍ଧାନ୍ତ ନେଲେ ଯେ ଯେହେତୁ ସରକାର ଏ ଦିଗରେ ପୂର୍ବରୁ କୌଣସି ଅର୍ଥ ବିନିଯୋଗ କରି ନାହାନ୍ତି କି ଏଥିରେ ସରକାରଙ୍କର କୌଣସି ଅନିଷ୍ଟ ହେବାର ସମ୍ଭାବନା ନାହିଁ, ତେଣୁ ଏହାକୁ ଅନୁମୋଦନ କରାଯାଇପାରେ। ଶତ ପ୍ରତିରୋଧ ସତ୍ତ୍ୱେ ମଧ୍ୟ ସେ ତାହାକୁ ଅନୁମୋଦନ କରିଥିଲେ। ଆଜିକାଲି ଏଭଳି ପ୍ରଶାସକ ମିଳିବା ଅତ୍ୟନ୍ତ କାଠିକର ପାଠ ନିଶ୍ଚୟ।

ଏଭଳି ଅଭିଜ୍ଞତା ଏହି ଲେଖକର ରହିଛି। ଶତ ଅନୁରୋଧ ପରେ ମଧ୍ୟ ଉପରିସ୍ଥ ଅଫିସର ଆଜିକାଲି ଫାଇଲ ପ୍ରତ୍ୟାଖ୍ୟାନ ହେବାର କାରଣକୁ ଜାଣିବାକୁ ଆଦୌ ଇଚ୍ଛା ପ୍ରକାଶ କରୁନାହାନ୍ତି। ଏହା ଆମ ସମୟର ବିଡ଼ମ୍ବନା ନୁହେଁ କି? ହେଲେ ସେଦିନ ଜେପି ବିନା କୌଣସି ଅନୁରୋଧରେ ଫାଇଲ ପ୍ରତି ନିଜର ଉତ୍କଣ୍ଠା ପ୍ରକାଶ କରିଥିଲେ ଓ ଜଣଙ୍କୁ ନ୍ୟାୟ ପ୍ରଦାନ କରିଥିଲେ। ଆମ ଦେଶର ପ୍ରଶାସନିକ ଅଫିସରମାନେ ଅତ୍ୟନ୍ତ ଜଗନ୍ନାଥ ପ୍ରସାଦଙ୍କ ପରି ପ୍ରଶାସନିକ ଅଫିସରଙ୍କ କାର୍ଯ୍ୟକଳାପ ରୀତିରୁ କିଛି ଶିକ୍ଷା କରିବା ଉଚିତ।

(୨) ପ୍ରାୟ ୧୯୭୦ ମସିହାର କଥା। ସେତେବେଳେ ଡକ୍ଟର ଓ.ପି. କେଜରିଓ୍ୱାଲ ଭାରତ ସରକାରଙ୍କ ପ୍ରକାଶନ ବିଭାଗର ସଂପାଦକ ଭାବରେ କାର୍ଯ୍ୟ କରୁଥାନ୍ତି। ସେହି ସମୟରେ ସେମାନେ ଗୋଟିଏ ପୁସ୍ତକର ପୁନଃମୁଦ୍ରଣ କରିବାପାଇଁ ଗୋଟିଏ ସୂଚନା ଅର୍ଥ ମନ୍ତ୍ରଣାଳୟକୁ ଅନୁମୋଦନ ପାଇଁ ପଠାଇଥିଲେ। ସେତେବେଳେ ସେଠାରେ ଜଗନ୍ନାଥ ପ୍ରସାଦ ଯୁଗ୍ମ ସଚିବ ଭାବରେ ଅବସ୍ଥାପିତ ଥାଆନ୍ତି। କେଜରିଓ୍ୱାଲ ତାଙ୍କ କାର୍ଯ୍ୟାଳୟର ଯୁଗ୍ମ ନିର୍ଦ୍ଦେଶକଙ୍କ ସହିତ ତାଙ୍କ କାର୍ଯ୍ୟାଳୟରେ ପହଞ୍ଚି ସେମାନଙ୍କର ଫାଇଲ ସଂପର୍କରେ ବୁଝାଇବା ପୂର୍ବରୁ ଜାଣିଗଲେ ଯେ ଜଗନ୍ନାଥ ପ୍ରସାଦ ତାହାକୁ ପୂର୍ବରୁ ତନ୍ନ ତନ୍ନ କରି ପଢ଼ି ସାରିଛନ୍ତି ଓ ସେ ସଂପର୍କରେ ତାଙ୍କର ସିଦ୍ଧାନ୍ତ ମଧ୍ୟ ନେଇ ସାରିଛନ୍ତି। ମାତ୍ର ପାଞ୍ଚମିନିଟ ମଧ୍ୟରେ ସେ ସେହି କାର୍ଯ୍ୟକୁ ସମାପ୍ତ କରିଦେଲେ।

ଏଥିରୁ ସ୍ପଷ୍ଟ ଜଣାପଡ଼େ ଯେ ସେ ନିଜ ଜୀବନରେ ଯେପରି ସମୟାନୁବର୍ତ୍ତିତା ରହି ସମୟକୁ ସମ୍ମାନ ଜଣାଉଥିଲେ, ଅନୁରୂପ ଭାବରେ ମଧ୍ୟ ଉପଲବ୍ଧି କରୁଥିଲେ ଯେ ସେହି ସମୟ ଅନ୍ୟପାଇଁ ମଧ୍ୟ କେତେ ମୂଲ୍ୟବାନ। କାହାରି ସମୟକୁ ସେ ଅଯଥାରେ ନଷ୍ଟ ହେବାକୁ ଦେଉ ନଥିଲେ ଓ ତାଙ୍କ ନିକଟକୁ ଆସୁଥିବା ସମସ୍ତ କାର୍ଯ୍ୟପାଇଁ ସେ ଅନ୍ୟ କାହାରି ଉପରେ ନିର୍ଭର ନକରି ତାହାକୁ ସେ ତନ୍ନ ତନ୍ନ କରି ଦେଖି ତତ୍‌କ୍ଷଣାତ ତାହା ଉପରେ ନିଜର ନିଷ୍ପତ୍ତି ଜଣାଇ ଦେଉଥିଲେ। ତାଙ୍କ

ନିକଟକୁ ନିଜର ଅସୁବିଧାପାଇଁ ଯାଉଥିବା ବ୍ୟକ୍ତିଙ୍କୁ ସେ ଯେପରି କେବେ ନିରାଶ କରିବାକୁ ଚାହୁନଥିଲେ; ଅନୁରୂପ ଭାବରେ ତାଙ୍କ କାର୍ଯ୍ୟର ଆବଶ୍ୟକତାକୁ ଉପଲବ୍ଧି କରି ଯଥା ସଂଭବ ସେ ସାହାଯ୍ୟର ହାତକୁ ସଂପ୍ରସାରିତ କରି ଦେଉଥିଲେ।

(୩) ୧୯୭୧ ମସିହାରେ ବିଜୟ ମିଶ୍ରଙ୍କର ନାଟକ 'ଗୋଟିଏ ସୂର୍ଯ୍ୟଦଗ୍ଧ ଫୁଲକୁ ନେଇ' ଭୁବନେଶ୍ୱରରେ ମଞ୍ଚସ୍ଥ ହେବାପରେ ଜଗନ୍ନାଥ ପ୍ରସାଦ ତାହାର ଏକ ସମୀକ୍ଷା ପ୍ରସ୍ତୁତ କରି ଦିଲ୍ଲୀରୁ ପ୍ରକାଶିତ ଇଂରାଜୀ ପତ୍ରିକାରେ ତାହାକୁ ପ୍ରକାଶ କରାଇଥିଲେ।

(୪) ୧୯୭୨ ମସିହାରେ ନାଟ୍ୟକାର ମନୋରଂଜନ ଦାସଙ୍କର ଏକ ନାଟକ 'ଅମୃତସ୍ୟ ପୁତ୍ର' ସୃଜନୀ ନାଟ୍ୟସଂସ୍ଥା ମାଧ୍ୟମରେ ମଞ୍ଚସ୍ଥ ହେବାପରେ ଜଗନ୍ନାଥ ପ୍ରସାଦ ତାହାର ଏକ ସମୀକ୍ଷା ପ୍ରସ୍ତୁତ କରି ସେହି ପତ୍ରିକାରେ ପ୍ରକାଶ କରିଥିଲେ।

(୫) ଆମ ଓଡ଼ିଆ ସାହିତ୍ୟର ଅନ୍ୟତମ ଗାଳ୍ପିକ କିଶୋରୀଚରଣ ଦାସ ସାଂପ୍ରତିକ ଓଡ଼ିଆ ଗଳ୍ପକୁ ଇଂରାଜୀରେ ଅନୁବାଦ କରି ଏକ ସଂକଳନ ପ୍ରସ୍ତୁତ କରିବାକୁ ଜଗନ୍ନାଥ ପ୍ରସାଦଙ୍କର ସାହାଯ୍ୟ କାମନା କରିଥିଲେ ପ୍ରାୟ ୧୯୭୩ ମସିହା ବେଳକୁ। ପୁସ୍ତକଟିର ଶୀର୍ଷକ ରହିଥିଲା, Oriya Writing Today। ଏହି ପୁସ୍ତକର ପ୍ରକାଶନ ପାଇଁ ଜେପି ଅନେକ ପ୍ରକାଶକଙ୍କ ଦ୍ୱାରସ୍ଥ ହୋଇଥିଲେ। ହେଲେ ଶେଷ ପର୍ଯ୍ୟନ୍ତ ସେ ପୁସ୍ତକଟି ପ୍ରକାଶ ପାଇ ପାରିନଥିଲା, ଯାହାକି କିଶୋରୀ ଚରଣଙ୍କ ସାରସ୍ୱତ ଜୀବନରେ ଏକ ବିଶେଷ ଦୁଃଖ ହୋଇ ରହିଗଲା।

(୬) ୧୯୭୯ ମସିହାରେ ଓ.ଭି. ବିଜୟନ୍ ନାମକ ଜଣେ ମାଲୟାଲାମ୍ ଲେଖକ ତଥା ବ୍ୟଂଗ ଚିତ୍ରକର ଦିଲ୍ଲୀରେ ରହୁଥିଲେ ଓ ସେହି ସମୟରେ ସେ ଗୋଟିଏ ଉପନ୍ୟାସ ରଚନା କରୁଥିଲେ, ଯେଉଁଥିରେ ତାଙ୍କ ଉପନ୍ୟାସର ଏକ ଚରିତ୍ର କଲିକତାରେ ରହୁଥିଲେ। କିନ୍ତୁ ମଜାର କଥା ହେଉଛି ଯେ ଲେଖକ ବିଜୟନ୍ କେବେ କଲିକତା ଯାଇନଥିଲେ। ତେଣୁ ସେ ତାଙ୍କ ଚରିତ୍ରଟି ପାଇଁ ଜଗନ୍ନାଥ ପ୍ରସାଦଙ୍କ ସହଯୋଗ ଲୋଡ଼ିଥିଲେ ଓ ଜଗନ୍ନାଥ ପ୍ରସାଦ ମଧ୍ୟ କଲିକତା ସଂପର୍କରେ ବିଭିନ୍ନ ତଥ୍ୟ ପ୍ରଦାନ କରି ତାଙ୍କ ଉପନ୍ୟାସକୁ ଓ ଉପନ୍ୟାସର ଚରିତ୍ରଟିକୁ ଗତିଶୀଳ କରିବାରେ ସାହାଯ୍ୟ କରିଥିଲେ।

(୭) ୧୯୭୯ ମସିହା ବେଳକୁ ପ୍ରସିଦ୍ଧ ଚଳଚ୍ଚିତ୍ର ନିର୍ଦ୍ଦେଶକ ଅରୁଣ କୌଲ ଓଡ଼ିଆ ନାରୀକବି କୁନ୍ତଳା କୁମାରୀ ସାବତଙ୍କ ଜୀବନୀକୁ ନେଇ ଗୋଟିଏ

ଚଳଚ୍ଚିତ୍ର ନିର୍ମାଣ କରିବାକୁ ଚାହୁଁଥିଲେ ଓ ସେ ସଂପର୍କରେ ସେ ଜଗନ୍ନାଥ ପ୍ରସାଦଙ୍କଠାରୁ ବିଭିନ୍ନ ପରାମର୍ଶ ନେବା ସହିତ ତାଙ୍କ ନିକଟକୁ ଦୀର୍ଘ ଚିଠିମାନ ପ୍ରେରଣ କରୁଥିଲେ। ଏପରି କି ଥରେ ସେ ୨୨ ପୃଷ୍ଠାର ବଡ଼ କାଗଜରେ ଏକ ହାତଲେଖା ଚିଠି ଜଗନ୍ନାଥ ପ୍ରସାଦଙ୍କ ନିକଟକୁ ପଠାଇଥିଲେ ସେ ସଂକ୍ରାନ୍ତରେ। ଜଗନ୍ନାଥ ପ୍ରସାଦ ମଧ୍ୟ ତାଙ୍କର ସାଧ୍ୟମତେ ତାଙ୍କୁ ସାହାଯ୍ୟ ପ୍ରଦାନ କରିଥିଲେ।

(୮) ଜର୍ମାନ ବିଦ୍ୱାନ ତଥା ହିନ୍ଦୀ ଭାଷାବିତ୍ ଲୋଠାର ଲୁତ୍‌ଜେ ପ୍ରାୟ ୧୯୮୦ ମସିହା ବେଳକୁ ଓଡ଼ିଆ ସାହିତ୍ୟକୁ ନେଇ କିଛି କାମ କରିବାକୁ ଚାହୁଁଥିଲେ ଓ ଜଗନ୍ନାଥ ପ୍ରସାଦଙ୍କର ସାହାଯ୍ୟ କାମନା କରୁଥିଲେ। ଏହି କାମଟି କିନ୍ତୁ ପରବର୍ତ୍ତୀ କାଳରେ ବିଶେଷ କିଛି ଆଗେଇ ପାରି ନଥିଲା।

(୯) ଆଧୁନିକ ଓଡ଼ିଆ କବି ସଚ୍ଚିଦାନନ୍ଦ ରାଉତରାୟ ୧୯୮୬ ମସିହାରେ ଜ୍ଞାନପୀଠ ପୁରସ୍କାର ପାଇବା ପରେ ସୁରେଶ କୋହଲି ଦୂରଦର୍ଶନ ପାଇଁ ତାଙ୍କ ଉପରେ ଏକ ପ୍ରାମାଣିକ ଚିତ୍ର ପ୍ରସ୍ତୁତ କରିବାରେ ଲାଗିଥିଲେ। ଜଗନ୍ନାଥ ପ୍ରସାଦ ଏହି ପ୍ରାମାଣିକ ଚିତ୍ରରେ କବିଙ୍କ ଦ୍ୱାରା 'ବାଜି ରାଉତ'ର ଆବୃତ୍ତିକୁ ଶୁଣିଲା ପରେ ତାହା ଠିକ୍ ନ ଲାଗିବାରୁ ସେ ଶେଷରେ କବିଙ୍କ ପାଇଁ ସେହି କବିତାକୁ ଆବୃତ୍ତି କରିଥିଲେ।

(୧୦) ଯେତେବେଳେ ଜଗନ୍ନାଥ ପ୍ରସାଦ ଓଡ଼ିଶା ଫିଲ୍ମ ଡେଭେଲୋପମେଣ୍ଟ କର୍ପୋରେସନ ବୋର୍ଡରେ ରହିଥିଲେ ସେତେବେଳେ ଓଡ଼ିଆ ନାଟ୍ୟ ଜଗତର ଅନ୍ୟତମ କଳାକାର ହେମନ୍ତ ଦାସ ଫକୀର ମୋହନ ସେନାପତିଙ୍କ 'ପେଟେଣ୍ଟ ମେଡ଼ିସିନ' ଗଳ୍ପ ଉପରେ ଏକ 'ସୁଲୋଚନା' ନାମକ ଏକ ଚଳଚ୍ଚିତ୍ର ନିର୍ମାଣ କରିବାପାଇଁ କିଛି ଋଣ ନେଇଥିଲେ। ମାତ୍ର କୌଣସି କାରଣବଶତଃ ସେ ତାହାକୁ ସଂପୂର୍ଣ୍ଣ କରି ପାରିନଥିଲେ। ପରବର୍ତ୍ତୀ କାଳରେ ସେ ନଅଙ୍କ ଦୁର୍ଭିକ୍ଷ ଉପରେ ମଧ୍ୟ ଚଳଚ୍ଚିତ୍ର ନିର୍ମାଣ କରିବାକୁ ଇଚ୍ଛା ପ୍ରକାଶ କରିଥିଲେ ଓ ଜଗନ୍ନାଥ ପ୍ରସାଦ ଦାସଙ୍କ ସହିତ ବିଳମ୍ବିତ ରାତ୍ରିରେ ଫୋନଯୋଗେ ସେ ସଂକ୍ରାନ୍ତରେ କଥାବାର୍ତ୍ତା ଜାରି ରଖୁଥିଲେ। ଏପରିକି ମୃତ୍ୟୁର କିଛି ପୂର୍ବରୁ ସେ ଜେପିଙ୍କଠାରୁ ଜାଣିବାକୁ ଚାହିଁଥିଲେ ଯେ କ୍ୟାମ୍ପବେଲଙ୍କ ରିପୋର୍ଟ କେଉଁଠାରୁ ମିଳିବ ବୋଲି। ସେତେବେଳେ ଜଗନ୍ନାଥ ପ୍ରସାଦ ହଠାତ୍ କିଛି ବୁଝି ପାରିନଥିଲେ। ହେଲେ ପରେ ସେ ଅନୁଭବ କଲେ ଯେ ହେମନ୍ତ ଦାସ ଦୁର୍ଭିକ୍ଷ କମିଶନଙ୍କ ରିପୋର୍ଟ କଥା ପଚାରୁଥିଲେ ବୋଲି।

ଏହିପରି ଦେଖିବାକୁ ଗଲେ ଜଗନ୍ନାଥ ପ୍ରସାଦଙ୍କର ସ୍ପଷ୍ଟବାଦିତା ଓ ସାହାଯ୍ୟ କରିବାର ମାନସିକତାର ପ୍ରମାଣ ରହିଛି ଅଜସ୍ର। ସାହିତ୍ୟ ସାଧନାପାଇଁ ସେ ଯେତେବେଳେ ପ୍ରଶାସନିକ ସେବା ପରି ଏକ ଲୋଭନୀୟ ଚାକିରିକୁ ପରିତ୍ୟାଗ କରିଛନ୍ତି, ସେତେବେଳେ ସେ ଆଉ ସାହିତ୍ୟ ଦିଗରେ ନିଜ ମାନସିକତାକୁ ଉନ୍ମୁକ୍ତ ରଖିବେ ନାହିଁ ତ ଆଉ କଣ କରିବେ ?

ଜଗନ୍ନାଥ ପ୍ରସାଦ କବିତାକୁ ଖୁବ ବେଶି ଭଲ ପାଉଥିବାରୁ ଆସନ୍ତାପିଢ଼ି କିପରି ଭଲ କବିତା ଲେଖିବେ ସେ ଦିଗରେ ସେ ଅଧିକ ଯତ୍ନଶୀଳ ଥିଲେ। ତେଣୁ ୧୯୮୪ରେ ଦିଲ୍ଲୀରେ ସେ କେତେକ ବଂଧୁଙ୍କୁ ନେଇ ଗଠନ କରିଥିଲେ The Poetic Society of India। ଏହାର ପ୍ରଥମ ସଂପାଦକ ଥିଲେ ଏଚ୍.କେ. କାଉଲ ଓ ସଭାପତି ଥିଲେ କେଶବ ମଲ୍ଲିକ। ସେ ଏହି ଅନୁଷ୍ଠାନରେ ୧୯୮୬ରୁ ୨୦୦୦ ପର୍ଯ୍ୟନ୍ତ ସଭାପତି ଭାବରେ କାର୍ଯ୍ୟ କରିଥିଲେ। ଏହି ଅନୁଷ୍ଠାନ ପକ୍ଷରୁ "The Journal of The Poetry Society of India" ପରି ଏକ ଷାଣ୍ମାସିକ ମୁଖପତ୍ର ମଧ୍ୟ ପ୍ରକାଶ ପାଉଥିଲା। ଏହି ଅନୁଷ୍ଠାନ କବିତା ସଂବନ୍ଧରେ ବିଭିନ୍ନ କର୍ମଶାଳାର ଆୟୋଜନ କରୁଥିଲା। ସେଠାରେ ପ୍ରବୀଣ କବିମାନେ ତରୁଣ କବିଙ୍କୁ କବିତା ସଂପର୍କରେ ତାଲିମ ପ୍ରଦାନ କରୁଥିଲେ।୧୯୯୪ ମସିହାର ଡିସେମ୍ବର ୨୭ ରୁ ୨୯ ତାରିଖ ପର୍ଯ୍ୟନ୍ତ ଭୁବନେଶ୍ୱରରେ ଆୟୋଜିତ ଏହିପରି ଏକ କର୍ମଶାଳାରୁ ଅଗ୍ନିସ୍ନାତ ସୁବର୍ଣ୍ଣ ପରି ନିଜ କବି ପ୍ରତିଭାକୁ ଶାଣିତ କରି ବାହାରି ଥିଲେ ପ୍ରୀତିଧାରା ସାମଲ ଓ ଇପ୍ସିତା ଷଡ଼ଙ୍ଗୀ ପରି ତରୁଣ କବିଗଣ।

ଲେଖକ ଭାବରେ ସେ ବୟସ୍କ ହୋଇ ଏବେ ନିରୋଳା ସାହିତ୍ୟ ରଚନା କରିବା ବ୍ୟତୀତ ଅନ୍ୟାନ୍ୟ କର୍ମରେ ଲିପ୍ତ ରହିଛନ୍ତି। ଯେପରି ସେ କେବେ ଚଳଚ୍ଚିତ୍ର ଜଗତ ସହିତ ଜଡ଼ିତ ରହିଛନ୍ତି ତ କେବେ ଆମ ସମୟରେ ସାହିତ୍ୟକୁ ନେଇ ଦେଖା ଦେଉଥିବା ବାଦ ବିସମ୍ବାଦକୁ ମୁରବୀ ଭଳି ବିଭିନ୍ନ ଉଦାହରଣର ଉପସ୍ଥାପନା କରି ସମାଧାନର ବାଟକୁ ଦେଖାଉଛନ୍ତି। କେତୋଟି ଉଦାହରଣକୁ ଏହି ମର୍ମରେ ଏଠାରେ ଉପସ୍ଥାପିତ କରାଯାଇପାରେ। ଚଳଚ୍ଚିତ୍ର ଜଗତକୁ ଯଦି ଲକ୍ଷ୍ୟ କରିବା ତେବେ ଦେଖିବା ଯେ କେତେବେଳେ ସେ ଚିଲଡ୍ରେନ୍ସ ଫିଲ୍ମ ସୋସାଇଟି ଅଫ୍ ଇଣ୍ଡିଆର ସଦସ୍ୟ ରହି ବାଙ୍ଗାଲୋରଠାରେ ଅନୁଷ୍ଠିତ ହୋଇଥିବା ଶିଶୁ ଚଳଚ୍ଚିତ୍ର ମହୋତ୍ସବରେ ଜୁରିର ସଭାପତିତ୍ୱ କରିଛନ୍ତି (୧୯୮୫) ତ କେତେବେଳେ ସେ ନିଜ ଉଦ୍ୟମରେ ସି.ଏଫ୍.ଏସ୍.ଆଇ. ସଂସ୍ଥା ତରଫରୁ

ଭୁବନେଶ୍ୱରଠାରେ ଏକ ଆନ୍ତର୍ଜାତିକ ଚଳଚ୍ଚିତ୍ର ମହୋତ୍ସବର ଆୟୋଜନ କରିଛନ୍ତି (୧୯୮୭)। ପୁଣି କେତେବେଳେ ସେ 'ଇଣ୍ଟରନ୍ୟାସନାଲ ଚିଲଡ୍ରେନ ଫେଷ୍ଟିଭାଲ'ର ସଭାପତି ଭାବରେ କାର୍ଯ୍ୟ କରିଛନ୍ତି (୧୯୮୯) ତ କେତେବେଳେ ସେ ଫିନଲ୍ୟାଣ୍ଡଠାରେ ଅନୁଷ୍ଠିତ ହେଉଥିବା ଶିଶୁ ଚଳଚ୍ଚିତ୍ର ମହୋତ୍ସବରେ ବିଚାରକ ଭାବରେ କାର୍ଯ୍ୟ ତୁଲାଇଛନ୍ତି (୧୯୯୦)। ପୁଣିକେବେ ସେ ଜାତୀୟ ଚଳଚ୍ଚିତ୍ର ପୁରସ୍କାର ମନୋନୟନ କମିଟିର ସଭ୍ୟ ଭାବରେ କାର୍ଯ୍ୟ କରିଛନ୍ତି ତ କେବେ ଦୂରଦର୍ଶନର ସ୍କ୍ରିପ୍ଟ ସିଲେକ୍ସନ କମିଟିରେ କାମ କରିଛନ୍ତି ଇତ୍ୟାଦି। ସେହିପରି ଯଦି ସମକାଳୀନ ସମୟରେ ଦେଖା ଦେଉଥିବା ସାରସ୍ୱତ ବାଦ-ବିବାଦ କଥାକୁ ଲକ୍ଷ୍ୟ କରିବା ତେବେ ଦେଖିବା ଯେ ବିଭିନ୍ନ ଉଦାହରଣ ଦେଇ କଥାକୁ ସମାଧାନ କରିବା ଦିଗରେ ନିଜର ମତକୁ ଉପସ୍ଥାପିତ କରୁଛନ୍ତି। ଯେପରି ଏହି ଗତ ଶତାବ୍ଦୀର ଶେଷ ଭାଗକୁ ବର୍ଣ୍ଣବୋଧକୁ ନେଇ ଯେପରି ବିତର୍କ ଦେଖାଦେଲା ଆମ ସାହିତ୍ୟରେ, ସେ ଦିଗରେ ସେ ଲେଖିଥିଲେ 'ବର୍ଣ୍ଣସଙ୍କର ବର୍ଣ୍ଣବୋଧ ଓ ବର୍ଣ୍ଣ ବିପର୍ଯ୍ୟୟ' ବା ଯେତେବେଳେ ରଂଗବତୀର ରିମିକ୍ସ ଗୀତକୁ ନେଇ ଆମ ଦେଶରେ ବାଦ ବିବାଦ ସରଗରମ୍ ହୋଇ ଉଠିଥିଲା ସେତେବେଳେ ସେ ସେଦିଗରେ ମଧ୍ୟ ଲେଖନୀ ଚାଳନା କରି ଲେଖିଥିଲେ 'ଅନୁବାଦ କଳା ଓ ରଙ୍ଗବତୀ' ପରି ଆଲେଖ୍ୟ, ଯାହାକି ସେତେବେଳେ ସମକାଳୀନ ସମ୍ବାଦ ପୃଷ୍ଠାରେ ପ୍ରକାଶ ପାଇଥିଲା ଓ ପରବର୍ତ୍ତୀ କାଳରେ ଯଥାକ୍ରମେ ତାହା 'ଆମ ଓଡ଼ିଆ ଆମର ଓଡ଼ିଶା' ଓ 'ଆମ ଭାଷା ଆମ ସଂସ୍କୃତି' ପରି ପୁସ୍ତକରେ ପ୍ରକାଶ ପାଇଥିଲା। ଏହି ପୁସ୍ତକଦ୍ୱୟର ଅନ୍ୟାନ୍ୟ ପ୍ରବନ୍ଧମାନକୁ ଲକ୍ଷ୍ୟ କଲେ ସେ ତାଙ୍କ ପରିଣତ ବୟସରେ କିପରି ଆମ ସମାଜର ବିଭିନ୍ନ ସମସ୍ୟା ପ୍ରତି ଅତିମାତ୍ରାରେ ସଚେତନ ରହିଛନ୍ତି, ତାହା ବେଶ୍ ଉପଲବ୍ଧି କରିହୁଏ।

ଏହିସବୁ ଦୃଷ୍ଟିକୋଣରୁ ଦେଖିବାକୁ ଗଲେ ମନେହୁଏ ଯେ ଜଗନ୍ନାଥ ପ୍ରସାଦ ଏଣିକି ସାହିତ୍ୟ ସଂରଚନାରୁ ସନ୍ନ୍ୟାସ ନେଇ ସାରିଲେଣି ଓ ବର୍ତ୍ତମାନ ବୟସ୍କର ଭୂମିକାକୁ ଯାହା ଲିଭାଉଛନ୍ତି ଠିକ୍ ଘରର ମୁରବୀପରି। କିନ୍ତୁ ମୁରବୀ ହିସାବରେ ଯେତେବେଳେ ଯାହା ବି ସେ ସମାଜକୁ କହୁଛନ୍ତି, ତାହା ବି ହେଉଛି ସାହିତ୍ୟ; କାରଣ ସାହିତ୍ୟପ୍ରାଣଙ୍କ କଥା ସାହିତ୍ୟ ହେବ ନାହିଁ ତ ଆଉ କଣ ହେବ ?

# ସାହିତ୍ୟ ମନନରୁ ସମାଜ ମନସ୍କତା: ଏକ ବିରାମହୀନ ଯାତ୍ରା

ଜଗନ୍ନାଥ ପ୍ରସାଦ ପିଲାଦିନୁ ସାହିତ୍ୟ ମନସ୍କ ରହିଥିଲେ। ସ୍କୁଲରେ ଅଧ୍ୟୟନ କାଳରୁ ଚିତ୍ରଆଙ୍କିବା ଓ କବିତା ଲେଖିବା ମାଧ୍ୟମରେ ତାହାର ସ୍ପଷ୍ଟ ସୂଚନା ମିଳି ସାରିଥିଲା। ତେବେ ଏକଥା ମଧ୍ୟ ସତ୍ୟ ଯେ ତାହାରି ମଧ୍ୟରେ କେତେବେଳେ ସେ ସମାଜ ମନସ୍କ ହୋଇ ପଡ଼ିଥିଲେ। ତାଙ୍କ ସମାଜ ମନସ୍କତାର ସୂଚନା ମିଳେ ଯେତେବେଳେ ସେ ତାଙ୍କର ସାଥୀମାନଙ୍କ ସହିତ ମିଶି 'ନେହରୁ ସେବାସଂଘ' ନାମରେ ଏକ ସଂସ୍ଥା ଖୋଲିଥିଲେ ଓ ନିଜଗ୍ରାମ ବାଣପୁରର ସଫେଇ ଓ ଅନ୍ଧବିଶ୍ୱାସର ଦୂରୀକରଣ ଦିଗରେ କାର୍ଯ୍ୟ କରିଥିଲେ। ବିଶେଷ କରି ମୁଷ୍ଟି ଭିକ୍ଷା କରି ଦୀନ-ଦରିଦ୍ରଙ୍କ ସେବାରେ ନିଜକୁ ହଜାଇ ଦେଉଥିଲେ। ସେହି ସାଙ୍ଗମାନଙ୍କ ମଧ୍ୟରେ ପ୍ରମୁଖ ଥିଲେ ହରିହର ରାମ ଓ ତାଙ୍କର ବଡ଼ ଭାଇ ବୈଦନାଥ ରାମ। ମାତ୍ର ଦଶ କି ବାର ବର୍ଷ ବୟସ ସମୟରେ ଏପରି କାର୍ଯ୍ୟରେ ମନୋନିବେଶ କରିବା କେବେ ଛୋଟିଆ କଥା ହୋଇ ନ ପାରେ। ସମୟ କ୍ରମେ ସେ ନିଜ ଗ୍ରାମ ବାଣପୁରରୁ ଆସିଛନ୍ତି କଟକ ଓ କଟକରୁ ପୁଣି ଯାଇଛନ୍ତି ସୁଦୂର ଦିଲ୍ଲୀକୁ। ହେଲେ ସଂସ୍ଥା ସହିତ ନିଜର ସଂପୃକ୍ତିକୁ ସେ କେବେ ପାସୋରି ଦେଇ ନାହାନ୍ତି। ବରଂ ସେହି ସଂସ୍ଥାର ପୃଷ୍ଠପୋଷକ ହେବା ସହିତ ଓ ସଂସ୍ଥାପାଇଁ ଯେତେବେଳେ ଯାହା ଆବଶ୍ୟକ ହୋଇଛି, ସେଦିଗରେ ସେ ନିଜର ସାଧ୍ୟାମତେ ଆର୍ଥିକ ସହାୟତାଠାରୁ ଆରମ୍ଭ କରି ବିଭିନ୍ନ ପ୍ରକାର ସହାୟତାପାଇଁ ସହଯୋଗର ହାତକୁ ସଂପ୍ରସାରିତ କରିଛନ୍ତି। ନେହରୁ ସେବା ସଂଘ ଆଜି ଏକ ବିରାଟ ବଡ଼ ଅନୁଷ୍ଠାନ। ଶିଶୁ ଓ ମହିଳା କଲ୍ୟାଣ କାର୍ଯ୍ୟକ୍ରମ ସାଙ୍ଗକୁ ବହୁ ଅନାଥ ଓ ହରିଜନ ପିଲାମାନଙ୍କୁ ଆଶ୍ରୟ ପ୍ରଦାନ କରିବା,

ସେମାନଙ୍କୁ ଉପଯୁକ୍ତ ଶିକ୍ଷା ଓ ତାଲିମ ମାଧ୍ୟମରେ ନିଜ ଗୋଡ଼ରେ ନିଜେ ଠିଆ ହେବାପାଇଁ ସକ୍ଷମ କରାଇବା ଇତ୍ୟାଦି ଅନେକ କାମ ଏବେ ସେହି ସଂସ୍ଥାର। ଜେପିଙ୍କ ଦ୍ୱାରା ଏକଦା ସୃଷ୍ଟି ହୋଇଥିବା ଛୋଟିଆ ସଂସ୍ଥା ଆଜି ମହାନ ବୋଧିଦ୍ରୁମରେ ପରିଣତ ହୋଇ ସାରିଲାଣି।

ହରିହର ରାମ ବିବାହ କରି ନଥିଲେ ଓ ସନ୍ନ୍ୟାସୀର ଜୀବନ ଯାପନ କରୁଥିଲେ। ଓଡ଼ିଶାରେ ସେ 'ସନ୍ଥ' ଓ ସୁଦୂର ଦିଲ୍ଲୀରେ 'ସ୍ୱାମୀଜୀ' ଭାବରେ ବେଶ୍ ଜଣାଶୁଣା ଥିଲେ। 'ଜୀବନ ପାଇଁ ବୃକ୍ଷ' (Trees for Life)ର ମୁଖ୍ୟ ବଲବୀର ମାଥୁରଙ୍କ ସହିତ ଜେପିଙ୍କର ବନ୍ଧୁତ୍ୱ ରହିଥିବାରୁ ସେ ଥରେ ତାଙ୍କୁ ତାଙ୍କ ଗ୍ରାମ ବାଣପୁରର ନେହରୁ ସେବା ସଂଘକୁ ଆମନ୍ତ୍ରିତ କରି ଆଣିଥିଲେ ଓ ସେଠାରେ ତାଙ୍କର ହରିହର ରାମଙ୍କ ସହିତ ଏକାନ୍ତ ଆତ୍ମୀୟତା ବୃଦ୍ଧି ପାଇଥିଲା। ସଂସ୍ଥାର ବିଭିନ୍ନ ପ୍ରକାର ସାମାଜିକ ଉନ୍ନୟନ ମୂଳକ କାର୍ଯ୍ୟକଳାପକୁ ଦେଖି ସେ ଆର୍ଥିକ ସହାୟତା ଦେବାକୁ ପ୍ରତିଶ୍ରୁତି ଦେବା ସହ ୫୦ ଜଣ ଅନ୍ତେବାସୀଙ୍କୁ ପୋଷ୍ୟ ସନ୍ତାନ ରୂପେ ଗ୍ରହଣ କରି ନେଇଥିଲେ। ପରବର୍ତ୍ତୀ କାଳରେ ମଧ୍ୟ ଜେପିଙ୍କ ସମୟୋଚିତ ପରାମର୍ଶ କ୍ରମେ ସେ ଏକ ଲକ୍ଷ ଟଙ୍କା ପ୍ରଦାନ କରିଥିଲେ, ଯାହା ଫଳରେ ସେବାସଂଘର କଂପ୍ୟୁଟରଟିଏ ଲାଗି ପାରିଥିଲା। ଜେପିଙ୍କ ସଂପର୍କରେ ମାଥୁରଙ୍କର ବକ୍ତବ୍ୟ ଏହିପରି : "........ now JP travels to the United States and I travel to India! When we see each other, I do not see in him a writer or a poet of International fame or literary icon. I see a friend for whom I have great affection. Neither time nor distance has diminished my regard for JP, and I am grateful to be his friend."

୧୯୯୯ ମସିହାର ମହାବାତ୍ୟାରେ ଯେତେବେଳେ ସମଗ୍ର ଓଡ଼ିଶା ଧ୍ୱସ୍ତ ବିଧ୍ୱସ୍ତ ହୋଇ ଯାଇଥିଲା, ସେତେବେଳେ ସେହି ବଲବୀର ମାଥୁର ଓଡ଼ିଶାପାଇଁ ସାହାଯ୍ୟର ହାତ ବଢ଼ାଇ ଜେପିଙ୍କର ସାହାଯ୍ୟ କାମନା କରିଥିଲେ। ସେତେବେଳେ ଭିଏତ୍‌ନାମ୍ ମଧ୍ୟ ଏହି ମହାବାତ୍ୟାରେ କିଛି ଦିନ ପାଇଁ ଜଳବନ୍ଦୀରେ ରହି ଯାଇଥିଲା। ଉଭୟ ଜେପି ଓ ମାଥୁର ଓଡ଼ିଶାର ବିପର୍ଯ୍ୟସ୍ତ ଅଞ୍ଚଳ ବୁଲି ପ୍ରପୀଡିତ ଲୋକମାନଙ୍କୁ ଅନେକ ପ୍ରକାର ସାହାଯ୍ୟ କରିଥିଲେ। ସେତେବେଳେ ନଡ଼ିଆ ଗଛଗୁଡ଼ିକ ମେସିନରେ କଟା ହେଲା ପରି ରାସ୍ତାରେ ଶୋଇ ରହିଥିଲା। ଜୀବଜନ୍ତୁମାନେ ମରି ରାସ୍ତା ଉପରେ ପଡ଼ି ରହିଥିଲେ। ତାହା ସତରେ ଅତ୍ୟନ୍ତ

ଭୟଙ୍କର ଦୃଶ୍ୟ ଥିଲା । ସେମାନେ ସେତେବେଳେ ଆହ୍ଲାବାଦର ଛାତ୍ର-ଛାତ୍ରୀମାନଙ୍କଠାରୁ ସାହାଯ୍ୟର ଭିକ୍ଷା ଚାହିଥିଲେ । ଓଡ଼ିଶାର ଭାଇ ଭଉଣୀଙ୍କୁ ସାହାଯ୍ୟ କରିବାପାଇଁ ଆହ୍ଲାବାଦର ଛାତ୍ର-ଛାତ୍ରୀମାନେ ନିଜ ନିଜ ଘରୁ କପେ ଚାଉଳ, ଡାଲି ବା ଖାଦ୍ୟସାମଗ୍ରୀ ଧରି ଯାହାକିଛି ଦାନ କରିଥିଲେ, ତାହା ଫଳରେ ଟ୍ରକ ଟ୍ରକ ଖାଦ୍ୟ ଓ ଅନ୍ୟାନ୍ୟ ଉପାଦାନରେ ବସ୍ତ୍ର ଓ କମ୍ବଳ ଆଦି ବୋଝେଇ ହୋଇ ଆସି ପହଞ୍ଚିଥିଲା ଭୁବନେଶ୍ୱରର ଖେଳପଡ଼ିଆରେ । ଆବଶ୍ୟକତା ବେଳେ ମିଳୁଥିବା ସାହାଯ୍ୟ ଯେ କିପରି ଭଗବାନଙ୍କ ଆଶିର୍ବାଦ ବୋଲି ମନେହୋଇଥାଏ, ତାହା ସେହି ସମୟର ଦୃଶ୍ୟରୁ ବେଶ୍ ଅନୁମିତ ହୋଇଥାଏ । ସେମାନେ ସେତେବେଳେ ପିଇବାପାଣି ପାଇଁ ପ୍ରାୟ ୭୨ଟି କୂପ ଖୋଳାଇଥଲେ ଓ ଅନେକ ନଡ଼ିଆ ଗଛର ରୋପଣ କରାଇଥିଲେ । ଏପରିକି ଜେପିଙ୍କ ନିଜ ଗ୍ରାମକୁ ମଧ୍ୟ ବଲବୀରଙ୍କୁ ନେଇ ଯାଇଥିଲେ ଓ ସେଠାରେ ବାତ୍ୟା ବିପର୍ଯ୍ୟସ୍ତ ଅନେକ ଲୋକଙ୍କୁ ସାହାଯ୍ୟ କରିବା ସହିତ ସେଠାରେ ଅନେକ ନଡ଼ିଆ ଗଛ ରୋପଣ କରାଇଥିଲେ ।

ଜେପି କେବଳ ନିଜ ଗ୍ରାମରେ ଏକଦା ନିର୍ମାଣ କରିଥିବା ନେହରୁ ସେବା ସଂଘ ସହିତ ଯେ ଆଜି ପର୍ଯ୍ୟନ୍ତ ସଂପୃକ୍ତ ରହିଛନ୍ତି, ତାହା ନୁହେଁ । ସେ ସଂସ୍ଥା ଛଡ଼ା ସେ ଆହୁରି ଅନେକ ସଂସ୍ଥା ସହିତ ସମୟ କ୍ରମେ ସେ ଜଡ଼ିତ ହୋଇ ଯାଇଛନ୍ତି । ଯେପରି ଓଡ଼ିଶାର ପ୍ରଖ୍ୟାତ ନେତା ରବି ରାୟ ୧୯୭୮ ମସିହାରେ ନିର୍ମାଣ କରିଥିବା 'ଓଡ଼ିଶା ଗ୍ରାମ ବିକାଶ ଫାଉଣ୍ଡେସନ' ସହିତ ସେ ଜଡ଼ିତ ରହି ତାହାର ଟ୍ରଷ୍ଟି ହୋଇଛନ୍ତି । ଏହି ସଂସ୍ଥାରେ ସେତେବେଳେ ଗାନ୍ଧୀବାଦୀ ଏଲ.ସି. ଜୈନ ଓ ଅମରେଶ ସେନ ପ୍ରମୁଖ ରହି ଓଡ଼ିଶାର ଅନେକ ବିକାଶମୂଳକ କାର୍ଯ୍ୟ କରୁଥିଲେ । ଜେପି ସେତେବେଳେ ସରକାରୀ ଚାକିରି କରୁଥିବାରୁ ଏହି ସଂସ୍ଥାରେ ଯୋଗ ଦେବାପାଇଁ ତାଙ୍କୁ ଅବଶ୍ୟ ସରକାରଙ୍କ ନିର୍ଦ୍ଦେଶ ମୁତାବକ 'ସର୍ବଭାରତୀୟ ସେବା (ଆଚରଣ) ଅଧିନିୟମ'ର ଅନେକ ସର୍ତ୍ତ ମାନି ନେବାକୁ ପଡ଼ିଥିଲା ।

ସେ ଗବେଷଣା କରୁଥିବା ବେଳେ ପପୁଲ ଜୟକାରଙ୍କ ସହିତ ପରିଚିତି ଘଟିଥିଲା ଜାତୀୟ ସଂଗ୍ରହାଳୟରେ, ଯାହାଙ୍କ ମାଧ୍ୟମରେ କ୍ୟାଥେରିନଙ୍କ ସହିତ ତାଙ୍କର ଯୋଗାଯୋଗ ହୋଇଥିଲା ଓ ପରେ ସେ ତାଙ୍କର ଫ୍ରେଞ୍ଚ କବିତାକୁ ଅନୁବାଦ କରିଥିଲେ । ପରବର୍ତ୍ତୀ କାଳରେ ପପୁଲ ଯେତେବେଳେ Indian National trust for Art and Cultural Heritage (INTACH) ନାମକ ଏକ ସଂସ୍ଥା ନିର୍ମାଣ କଲେ, ସେତେବେଳେ ସେ ଜେପିଙ୍କୁ ସେଥିରେ ଅନ୍ତର୍ଭୁକ୍ତ କରିଥିଲେ । ଓଡ଼ିଶାପାଇଁ

ହେଉଥିବା ଅନେକ ପ୍ରକଳ୍ପରେ ଜେପି ଅତ୍ୟନ୍ତ ସକ୍ରିୟ ଭାବରେ କାର୍ଯ୍ୟ କରୁଥିଲେ। ପପୁଲଙ୍କ ଅକାଳ ବିୟୋଗ ପରେ ଅବଶ୍ୟ ସେହି ସଂସ୍ଥା ସହିତ ଜେପିଙ୍କ ସଂପର୍କ କ୍ରମଶଃ ଦୂରେଇ ଯାଇଥିଲା।

ସେହିପରି ୧୯୭୯ ମସିହାରେ ଦିଲ୍ଲୀରେ ସୃଷ୍ଟି ହୋଇଥିବା ମାନୁଷୀ ଟ୍ରଷ୍ଟର ମଧ୍ୟ ସେ ସଭ୍ୟ ହୋଇଥିଲେ। ଏହି ସଂସ୍ଥା ଏକ ସାହିତ୍ୟିକ ଓ ସମାଜ ଉନ୍ନୟନମୂଳକ ସଂସ୍ଥା, ଯାହାକି ମହିଳାମାନଙ୍କର ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ବିକାଶକୁ ମାତ୍ରାଧିକ ପରିମାଣରେ ପ୍ରୋତ୍ସାହିତ କରୁଥିଲା। ଏହି ସଂସ୍ଥାପାଇଁ ଜେପି ମଧ୍ୟ ଓଡ଼ିଆ 'ଲକ୍ଷ୍ମୀ ପୁରାଣ'ର ଇଂରାଜୀ ଅନୁବାଦ ପ୍ରସ୍ତୁତ କରିଥିଲେ। ଜେପିଙ୍କ ସଂପର୍କରେ 'ମାନୁଷୀ' ପତ୍ରିକାର ସଂପାଦିକା ମଧୁ କିସୱାର ମତ ବ୍ୟକ୍ତ କରି ଲେଖିଛନ୍ତି, "He is quintessentially an Oriya but his artistic and moral sensibilities encompass the whole of India while he is at the same time a true citizen of the world." ସେ ଜେପିଙ୍କ ପ୍ରଶଂସାରେ ଶତମୁଖର ହୋଇ ଲେଖିଛନ୍ତି, "To know JP is to know what it is to live a life of integrity, to know JP is to know how to maintain your innate dignity even when surrounded by corruption, sycophancy, greed, corruption and undignified one-upmanship."

ଜେପି ଅନେକ କ୍ଷେତ୍ରରେ ଅନେକ ସାମାଜିକ ଅନୁଷ୍ଠାନ ସହିତ ମଧ୍ୟ ଜଡ଼ିତ, ଠିକ୍ ମୁରବୀ ପରି। ସେ ଯେତେବେଳେ ଦିଲ୍ଲୀକୁ ପ୍ରଥମେ ଯାଇଥିଲେ, ସେତେବେଳେ ସେଠାରେ ଦୁଇଟି ପ୍ରମୁଖ ସଂସ୍ଥା କାର୍ଯ୍ୟ କରୁଥିଲା - ଓଡ଼ିଆ ସମାଜ ଓ ନୀଳାଚଳ ସେବା ସଂଘ। ସେ କ୍ରମେ ସେହି ଦୁଇଟି ସଂସ୍ଥା ସହିତ ନିଜକୁ ଜଡ଼ିତ କରାଇନେଲେ। ପରବର୍ତ୍ତୀ କାଳରେ ସେ ଓଡ଼ିଆ ସମାଜର ସଭାପତି ଆସନ ଅଳଂକୃତ କରିଥିଲେ, ଯାହାକୁ କି ଦିନେ ହରେକୃଷ୍ଣ ମହାତାବ ଅଳଂକୃତ କରିଥିଲେ। ତାଙ୍କରି ନେତୃତ୍ୱରେ ସେଠାରେ ସହୃଦୟ ସଭା ଓ ଓଡ଼ିଶା ଫୋରମ୍ ନାମକ ଦୁଇଟି ସଂସ୍ଥାର ସୃଷ୍ଟି ହୋଇପାରିଥିଲା। ସହୃଦୟ ସଭା ଥିଲା ଏକ ସାରସ୍ୱତ ଅନୁଷ୍ଠାନ ଓ ଓଡ଼ିଶା ଫୋରମ୍ ଥିଲା ଓଡ଼ିଶା ସଂକ୍ରାନ୍ତୀୟ ବିଭିନ୍ନ ସମସ୍ୟା ଉପରେ ଆଲୋକପାତ କରିବାର ଏକ ସାମାଜିକ ସଂସ୍ଥା। ୧୯୯୯ର ମହାବାତ୍ୟା ବେଳେ ବିପର୍ଯ୍ୟସ୍ତ ଓଡ଼ିଶା ପାଇଁ ଏହି ଦୁଇ ଅନୁଷ୍ଠାନର ଅକୁଣ୍ଠିତ ସାହାଯ୍ୟ ବାସ୍ତବରେ ପ୍ରଶଂସନୀୟ।

ଜଣେ ଦିଲ୍ଲୀବାସୀ ଭାବରେ ମଧ୍ୟ ସେ India International Centre ରେ ଓ The Press Clubରେ ଯୋଗ ଦେଇଥିଲେ। ଏହା ଛଡ଼ା ଦିଲ୍ଲୀ ଫିଲ୍ମ

ସୋସାଇଟି ଓ ଟେବୁଲ ଟେନିସ ଆସୋସିଏସନରେ ମଧ୍ୟ ସଂପୃକ୍ତ ହୋଇଥଲେ। ସବୁଠି ରହି ସମସ୍ତ ପ୍ରକାର ସମସ୍ୟାକୁ ସେ ସମାଧାନ କରୁଥିଲେ। ସେହି କାରଣରରୁ ସମ୍ଭବତଃ ନିକଟରେ ଗୋଟିଏ ଓଡ଼ିଆ ସମ୍ବାଦପତ୍ରରେ ତାଙ୍କୁ 'ଓଡ଼ିଆଙ୍କ ମୁରବୀ' ବୋଲି ଅଖ୍ୟାୟିତ କରାଯାଇଥିଲା।

ବାସ୍ତବରେ ଜଗନ୍ନାଥ ପ୍ରସାଦଙ୍କର ଜୀବନ ହେଉଛି ଏକ ବହୁମୁଖୀ ପ୍ରତିଭାର ଜୀବନ, ସାହିତ୍ୟ ସାଧନାଠାରୁ ଆରମ୍ଭ କରି ସମାଜ ସେବା ପର୍ଯ୍ୟନ୍ତ ତାହା ଏତେ ବ୍ୟାପ୍ତ ଯେ, ତାଙ୍କୁ ଯେଉଁ ଦୃଷ୍ଟିକୋଣରୁ ଅନୁଧ୍ୟାନ କଲେ ବି ସେ ଏକ ପରିପୂର୍ଣ୍ଣ ବ୍ୟକ୍ତିତ୍ୱ ବୋଲି ମନେ ହୋଇଥାନ୍ତି।

# 'ଜଲ୍‌ଦି ଜଲ୍‌ଦି'ରେ ଆଜି ପ୍ରଥମ ପୁରୁଷ

ପିତା ଶ୍ରୀଧର ଦାସ ତାଙ୍କ ଅନ୍ତିମ ସମୟରେ ଟେପ୍‌ରେକର୍ଡର ମାଧ୍ୟମରେ କିଛି ବକ୍ତବ୍ୟ ରଖିଥିଲେ, ଯେଉଁଥିରେ ସେ ମଣିଷ ଜୀବନ ସମ୍ବନ୍ଧରେ ଗଭୀର ଚିନ୍ତା ଓ ବିଚାରକୁ ଉପସ୍ଥାପିତ କରିଥିଲେ। ସେଥିରେ ସେ ଗୀତାରେ କୁହାଯାଇଥିବା କର୍ମଯୋଗର କଥା କହି ବୁଝାଇଛନ୍ତି ଏହିପରି: "ବିବେକ ଉପରେ ନିର୍ଭର କରି ନିଜର କର୍ତ୍ତବ୍ୟ ସ୍ଥିର କର। ଆଉ ସେହି କର୍ତ୍ତବ୍ୟ ପାଳନ କରିବାକୁ ଯାଇ ନିଜର ପ୍ରାଣ ଦିଅ। ଏହା ହେଲା ଆମ ସ୍ୱଧର୍ମର ଉପଦେଶ।" ପିତାଙ୍କର ଏହି ଉପଦେଶକୁ ଜଗନ୍ନାଥ ପ୍ରସାଦ ଯେ ନ ବୁଝିଛନ୍ତି ବୋଲି ନୁହେଁ; ବରଂ କହିବାକୁ ଗଲେ ପିତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ସେହି ଧର୍ମକୁ ମୂଳରୁ ହିଁ ବୁଝିଛନ୍ତି ଓ ନିଜ ଜୀବନରେ ସବୁବେଳେ ନିଜର ବିବେକାନୁସାରେ କାର୍ଯ୍ୟ କରିଛନ୍ତି। ଏପରି କି କେବଳ ସାହିତ୍ୟ ସାଧନାପାଇଁ ପ୍ରଶାସନିକ ସେବା ରୂପୀ ଅତ୍ୟନ୍ତ ଲୋଭନୀୟ ଚାକିରିକୁ ମଧ୍ୟ ସେ ସ୍ୱଇଚ୍ଛାରେ ପରିତ୍ୟାଗ କରିଛନ୍ତି।

ପିଲାଦିନରୁ ସାହିତ୍ୟକୁ ଆପଣାଇ ନେଇଥିଲେ ସେ ଜୀବନରେ। ତେବେ ସେ ସାହିତ୍ୟପ୍ରତି ଅତିମାତ୍ରାରେ ଆବେଗଶୀଳ ହୋଇ ଭାସି ଯାଇନାହାନ୍ତି। ନିଷ୍ଠାର ସହିତ ସେ ନିଭାଇଛନ୍ତି ଚାକିରୀର ଦାୟିତ୍ୱବୋଧକୁ। ଚାକିରି ଜୀବନର ଆନନ୍ଦ-ଉଲ୍ଲାସକୁ ସେ ଯେପରି ଅନୁଭବ କରିଛନ୍ତି; ଗ୍ଲାନି- ଯନ୍ତ୍ରଣାକୁ ମଧ୍ୟ ଅନୁରୂପ ଭାବରେ ଭୋଗିଛନ୍ତି ତିଳେ ତିଳେ ଜୀବନରେ। ଶେଷରେ ସେ ଆଉ ଚାକିରିର ବନ୍ଧନରେ ବାନ୍ଧି ହୋଇ ରହିବାକୁ ଚାହିନାହାନ୍ତି। ସରକାରୀ ଚାକିରି ପରିତ୍ୟାଗ କଲାପରେ ମୁକ୍ତ ବିହଙ୍ଗ ପରି ସେ ସାହିତ୍ୟାକାଶରେ ଉଡ଼ି ବୁଲିଛନ୍ତି।

ସେ ସୃଷ୍ଟି କରିଛନ୍ତି ଚିତ୍ର, କବିତା, ନାଟକ, ଗଳ୍ପ, ଉପନ୍ୟାସ, ଗବେଷଣାତ୍ମକ ନିବନ୍ଧ ଓ ସମାଲୋଚନା। ସାହିତ୍ୟର ସବୁ ବିଭାଗରେ ସେ ମନୋନିବେଶ କରିଛନ୍ତି ଓ ଆଶ୍ଚର୍ଯ୍ୟର କଥା ଯେ ସେ ଯେଉଁ ବିଭାଗରେ ହାତ ଦେଇଛନ୍ତି, ସେ ବିଭାଗର ଚରମସୀମାକୁ ସେ ସ୍ପର୍ଶ କରିଛନ୍ତି। ଏପରି ହେବା ପଛରେ ଅବଶ୍ୟ ଏକ ନିର୍ଦ୍ଦିଷ୍ଟ କାରଣ ବିଦ୍ୟମାନ। ସେ ନିଜେ ସ୍ୱୀକାର କରନ୍ତି, "ମୁଁ ନିଜ ପାଇଁ ନିଜେ ଏକ ଶୃଙ୍ଖଳା ରଖିଥାଏ। କିଛି ଦିନ କବିତା ଲେଖିବା ପରେ ତାକୁ ବନ୍ଦ ରଖି ଗଳ୍ପ ଲେଖେ। ପୁଣି କବିତାକୁ ଫେରିଆସେ।" ସେ ଏପରି କରିବା ପଛରେ ମଧ୍ୟ ଏକ କାରଣ ରହିଛି। ସେ ନିଜେ ମଧ୍ୟ ସେ ସଂପର୍କରେ ସ୍ୱୀକାର କରିଛନ୍ତି, "ମୋର ମନେହେଲା ମୁଁ ଏପରି କିଛି କଥା କହିବାକୁ ଚାହୁଁଛି ଯାହା କବିତାରେ କହିବା ସମ୍ଭବ ନୁହେଁ। ସେଥିପାଇଁ ମୁଁ ଗଳ୍ପରେ ହାତ ଦେଲି। ଅବଶ୍ୟ ମୁଁ ତା ପୂର୍ବରୁ ନାଟକ ଲେଖିଥିଲି।"

ସଚେତନ ଭାବରେ ଜଗନ୍ନାଥ ପ୍ରସାଦ ଦାସ କବିତା ରାଜ୍ୟକୁ ଓହ୍ଲାନ୍ତି ପିଲାଦିନେ ଲେଖିଥିବା କବିତାରେ ପୂର୍ଣ୍ଣଚ୍ଛେଦ ପକାଇବାର ଠିକ୍ ୧୫ ବର୍ଷ ପରେ, 'ପ୍ରଥମ ପୁରୁଷ'କୁ ହାତରେ ଧରି। ସେହିଦିନଠାରୁ ସେ ସାହିତ୍ୟର ସାମ୍ରାଜ୍ୟରେ ନିଜର ଅଖଣ୍ଡ ଆଧିପତ୍ୟକୁ ବିସ୍ତାର କରି ଚାଲଛନ୍ତି। ଭଲ ସାହିତ୍ୟ ରଚନା କରିବା କିଛି ସହଜ ବ୍ୟାପାର ମାତ୍ର ନୁହେଁ। ତାକୁ ଲେଖିବା, ସଂଶୋଧନ କରିବା, ପୁଣି ତାକୁ ଠିକ୍ ଭାବରେ ଉତାରିବା ବା ଟାଇପ୍ କରିବା ବା ଆଜିକାଲି ଯେପରି ଡି.ଟି.ପି. ହେଉଛି ସେପରି କରିବା ଇତ୍ୟାଦି ଅତ୍ୟନ୍ତ ବିରକ୍ତିକର ଓ କ୍ଲାନ୍ତିଦାୟକ କାର୍ଯ୍ୟ। ଏତେ ସତ୍ତ୍ୱେ ମଧ୍ୟ ଜଣେ ସାହିତ୍ୟ ରଚନା କରେ। ଆଜିକାଲି କିନ୍ତୁ ସାହିତ୍ୟିକଙ୍କ ସଂଖ୍ୟା କିଛି କମ୍ ନୁହେଁ। ଆମ ସମାଜରେ ଏପରି ସାହିତ୍ୟିକ ଅଛନ୍ତି ଯେଉଁମାନଙ୍କର ଗୋଟିଏ କାଗଜ ଲେଖା ସରିଲା ବେଳକୁ ତାହା ଛପା ପାଇଁ ପ୍ରେସକୁ ଚାଲିଯାଏ। ଜଗନ୍ନାଥ ପ୍ରସାଦ ଏସବୁ ଜାଣନ୍ତି, ଜାଣନ୍ତି ବୋଲି ତ ତାହାକୁ ପୁଙ୍ଖାନୁପୁଙ୍ଖ ଭାବରେ ସେ ଉଲ୍ଲେଖ କରିଛନ୍ତି ତାଙ୍କ ପ୍ରବନ୍ଧ 'ନବେ ପ୍ରତିଶତ ଖଟଣି'ରେ। ସାହିତ୍ୟ ରଚନାର ଅନ୍ୟତମ ଆକର୍ଷଣ ଭାବର ଏବେ ଦଣ୍ଡାୟମାନ ହୋଉଛି 'ପୁରସ୍କାର' ଓ ସେହି ପୁରସ୍କାର ପାଇଁ କିପରି ଲେଖକ ହାତରୁ ଖାଇ ଘୋଡ଼ା ଆଗରେ ଡିଏଁ ଓ ପୁରସ୍କାର ପାଇଁ ଅନ୍ୟକୁ ଲାଞ୍ଛିଦିଏ, ତାହାକୁ ମଧ୍ୟ ସେ ନିଜ ସାହିତ୍ୟର ପରିସର ମଧ୍ୟକୁ ଆଣିଛନ୍ତି। ବୟସ୍କ ହେବା ପରେ ସେ ନିରୋଳା ସାହିତ୍ୟରୁ ଅବଶ୍ୟ ସନ୍ନ୍ୟାସ ନେଇ ସାରିଲେଣି, ତେବେ ସାଂପ୍ରତିକ ଘଟଣା ତାଙ୍କ ମାନସିକତାକୁ ଉଦ୍‌ବେଳିତ

କରୁଥିବାରୁ ସେ ତାକୁ ସମ୍ଭବତଃ ସହ୍ୟ କରି ପାରୁନାହାନ୍ତି। ସେହି କାରଣରୁ ତାଙ୍କ ପ୍ରତିକ୍ରିୟା ଯାହା ବି ଘଟୁଛି; ସେ ସବୁ ଅଭ୍ୟାସ ବଶତଃ ସାହିତ୍ୟାନୁଗାମୀ ହୋଇ ଯାଉଛି। ସାଂପ୍ରତିକ ପ୍ରବନ୍ଧାଦିରେ ସେହି କାରଣରୁ ରହୁଛି 'ଦାନ ମାଝିର କରୁଣ କାହାଣୀ' ବା ରହୁଛି 'ସୋନିଆ ଲାଓ –ଦେଶ ବଚାଓ'ର ସ୍ଲୋଗାନ ଅନ୍ତରାଳରେ ରହିଥିବା ରହସ୍ୟ ଇତ୍ୟାଦି।

୧୯୯୧ ମସିହାରେ ସେ ଶଯ୍ୟାଶାୟୀ ଥିବା ବେଳେ ଯେଉଁ ସାହିତ୍ୟ ରଚନା କରିଛନ୍ତି, ସେସବୁ ହେଉଛି ଶିଶୁ ସାହିତ୍ୟ : ଆଳିମାଳିକା, ଆଲୁକୁଚି ମାଲୁକୁଚି ଇତ୍ୟାଦି। ରାଜାଙ୍କର ପୃଷ୍ଠବ୍ରଣର ଯନ୍ତ୍ରଣାକୁ ଲାଘବ କରିବାପାଇଁ କବି ବଳଦେବ ରଥ ସେଦିନ ଲେଖିଥିଲେ 'ହାସ୍ୟକଲ୍ଲୋଳ'; ଆଉ ଏବେ ନିଜ ଯନ୍ତ୍ରଣାକୁ ଲାଘବ କରିବାପାଇଁ ଜଗନ୍ନାଥ ପ୍ରସାଦ ଲେଖିଲେ ହାସ୍ୟ ଉଦ୍ରେକକାରୀ ଶିଶୁ ସାହିତ୍ୟ। ବାସ୍ତବରେ ହସ ହିଁ ବୋଧହୁଏ ମଣିଷକୁ ସମସ୍ତ ପ୍ରକାର ଯନ୍ତ୍ରଣାରୁ ମୁକ୍ତି ଦିଏ। କିନ୍ତୁ ବଡ଼ ବିଡ଼ମ୍ବନାର କଥା ଯେ ଆଜି କାଲି ସମାଜରେ ହସର ଘୋର ଅଭାବ ଦେଖା ଦେଉଛି। ସେଇଥିପାଇଁ ତ ସେ ଲେଖନ୍ତି 'ଆପଣ ବର୍ତ୍ତମାନ ଓଡ଼ିଶାରେ: ଏଠାରେ ହସିବା ମନା' ପରି ଅତ୍ୟନ୍ତ ମନନଶୀଳ ପ୍ରବନ୍ଧ।

ଆମେମାନେ ଭାବୁ ଯେ ଯେଉଁମାନେ ସରକାରୀ ଚାକିରି କରିଛନ୍ତି ବିଶେଷ କରି ପ୍ରଶାସନିକ ଚାକିରି, ସେମାନେ ଆର୍ଥିକ ସ୍ତରରେ ଅତ୍ୟନ୍ତ ସ୍ୱଚ୍ଛଳ। ଏହା ହୁଏତ ସତ୍ୟ ହୋଇପାରେ ଅନେକଙ୍କ ପାଇଁ; ତେବେ ଜଗନ୍ନାଥ ପ୍ରସାଦଙ୍କ ଜୀବନ ଏଥିରୁ ବ୍ୟତିକ୍ରମ ନିଶ୍ଚୟ। ତାଙ୍କ ଜୀବନକୁ ଅନୁଧ୍ୟାନ କଲେ ଜାଣାଯାଏ ଯେ ସେ ଅତ୍ୟନ୍ତ ମିତବ୍ୟୟୀ ଥିଲେ। ଦିଲ୍ଲୀରେ ରହୁଥିବା ବେଳେ ଗ୍ରୀଷ୍ମରୁ ରକ୍ଷା ପାଇବା ପାଇଁ ଆବଶ୍ୟକତା ମୁତାବକ ଯେପରି ଏକ ସେକେଣ୍ଡହାଣ୍ଡ କୁଲର କିଣିଥିଲେ, ସେହିପରି କେବଳ ନିଜ ରୟାଲିଟିର ତିନିଶହ ଟଙ୍କାରେ ଏକ ସେକେଣ୍ଡହାଣ୍ଡ ଟାଇପ୍ ରାଇଟର କିଣିଥିଲେ ଇତ୍ୟାଦି।

ଆଜି କିନ୍ତୁ ଜଗନ୍ନାଥ ପ୍ରସାଦ ବୟସର ସୂର୍ଯ୍ୟାସ୍ତ କାଳରେ ଉପନୀତ। ତେଣୁ ସୂର୍ଯ୍ୟାସ୍ତ ପୂର୍ବରୁ ସବୁକିଛି ବାକି ରହିଯାଇଥିବା କାର୍ଯ୍ୟକୁ ସେ ସଂପୂର୍ଣ୍ଣ କରିଦେବାକୁ ଚାହୁଁଛନ୍ତି। କୌଣସି କାମର ବିଳମ୍ବ ଦେଖିଲେ ତାକୁ ଚଞ୍ଚଳ ଶେଷ କରିବା ଦିଗରେ ତାଙ୍କର ପ୍ରେରଣା ଅବିସ୍ମରଣୀୟ। ଏହି ଲେଖକ ଯେତେବେଳେ ତାଙ୍କ ଉପରେ ପ୍ରସିଦ୍ଧ ସମାଲୋଚକ ଗଂଗା ପ୍ରସାଦ ବିମଲଙ୍କର ଏକ ଆଲେଖ୍ୟ 'ଭାରତୀୟ କବିତା କା ଆଧାର'ର ଓଡ଼ିଆ ଅନୁବାଦ ପ୍ରସ୍ତୁତ କରୁଥିଲେ,

ସେତେବେଳେ କୌଣସି କାରଣରୁ କାମଟି ମଝିରେ ସାମାନ୍ୟ ଧିମେଇ ଯାଇଥିଲା। କଥୋପକଥନରେ ଜଗନ୍ନାଥ ପ୍ରସାଦ ପ୍ରକୃତ କାରଣଟି ଜାଣିବା ପରେ କିନ୍ତୁ କହିଥିଲେ, ହେଉ ସେ କାମଟି ସରିଲେ ଏହାକୁ କରିଦିଅ। 'ଜଲ୍‌ଦି ଜଲ୍‌ଦି'। ଏବେ ବି ସେହି ଶବ୍ଦ 'ଜଲ୍‌ଦି ଜଲ୍‌ଦି' ମୋ ଠାରେ ଅନେକ ସମୟରେ ପ୍ରତିଧ୍ୱନିତ ହୁଏ। ଏହି ପ୍ରତିଧ୍ୱନି କେବଳ ଜଗନ୍ନାଥ ପ୍ରସାଦଙ୍କ କାର୍ଯ୍ୟ ପାଇଁ ନୁହେଁ; ଅଧିକନ୍ତୁ ନିଜର ଅନେକ ବ୍ୟକ୍ତିଗତ କାମରେ ଯେତେବେଳେ ଶିଥିଳତା ଆସିଯାଏ, ସେତେବେଳେ ମଧ୍ୟ ଏହା ମୋତେ ପ୍ରେରଣା ଦିଏ।

ଜଗନ୍ନାଥ ପ୍ରସାଦ ପ୍ରାୟ ପନ୍ଦର ବର୍ଷ ତଳେ ଏକଦା 'କଥା' ପତ୍ରିକା ମାଧ୍ୟମରେ ଆରମ୍ଭ କରିଥିଲେ ଏକ ଉପନ୍ୟାସ 'ଶୁକପକ୍ଷୀ ପ୍ରଶ୍ନ', ଯାହାକି ସମୟ କ୍ରମେ ଅପୂର୍ଣ୍ଣତା ମଧ୍ୟରେ ରହି ଯାଇଥିଲା। ଏବେ କିନ୍ତୁ ତାହାକୁ ସେ 'ନବଗୁଞ୍ଜର' ଶୀର୍ଷକରେ ପୂର୍ଣ୍ଣତା ଦେବାକୁ ଇଚ୍ଛା କରିଛନ୍ତି। ଏହି ମର୍ମରେ ଆମେ ଆଶା କରି ପାରିବା ଯେ ଓଡ଼ିଆ ସାହିତ୍ୟ ନିକଟ ଭବିଷ୍ୟତରେ ଆଉ ଏକ ବଳିଷ୍ଠ ଉପନ୍ୟାସ ପାଇ ପରିବ ବୋଲି।

ଜେପି ଆଜିକାଲି ସବୁକିଛି ଜଲଦି ଜଲଦିରେ କରୁଛନ୍ତି। ତେବେ କିଛି କରିବା ପୂର୍ବରୁ ଖୁବ ଭାବିଚିନ୍ତି ସେ ଦିଗରେ ନିଜର ସ୍ଥିର ସିଦ୍ଧାନ୍ତ ଗ୍ରହଣ କରୁଛନ୍ତି। ନିଜର ବୌଦ୍ଧିକ ସଂପତ୍ତି କିପରି ତାଙ୍କର ଉତ୍ତରସୂରୀ ଓଡ଼ିଆ ପାଠକ-ପାଠିକାଙ୍କ ନିକଟରେ ସହଜରେ ପହଞ୍ଚି ପାରିବ, ସେ ଦିଗରେ ସେ ଯେତିକି ଚିନ୍ତିତ ଓ ଚେଷ୍ଟିତ; ଅନୁରୂପ ଭାବରେ ନିଜର ଭୌତିକ ସଂପତ୍ତି ତାଙ୍କ ପରେ କିପରି ତାଙ୍କର ଉତ୍ତରସୂରୀ ପତ୍ନୀ ମିତ୍ରା ଓ ପରେ ନିଜର କନ୍ୟା ମୋନାଙ୍କ ପାଇଁ ସହଜ ଲବ୍ଧ ହୋଇ ପାରିବ, ସେ ଦିଗରେ ସେ ଯତ୍ନଶୀଳ ଓ କର୍ତ୍ତବ୍ୟ ସଚେତନ। ନିଜର ଜୀବିତାବସ୍ଥାରେ ସ୍ଥିର ମସ୍ତିଷ୍କରେ "When I die" ଓ "Living Will of Jagannath Prasad Das" ଶିରୋନାମାରେ ସେ ଯେଉଁ ଇଚ୍ଛାପତ୍ର ଦ୍ୱୟ ପ୍ରସ୍ତୁତ କରିଛନ୍ତି, ତାହାକୁ ଅନୁଧ୍ୟାନ କଲେ ସେ କିପରି ନିର୍ମୋହ ଓ ସ୍ଥିତପ୍ରଜ୍ଞ ତାହା ବେଶ ଅନୁମାନ କରାଯାଇପାରେ। ଏହି ମର୍ମରେ ଓଡ଼ିଆ ପାଠକଙ୍କ ଉଦ୍ଦେଶ୍ୟରେ ତାଙ୍କର ସେହି ଇଚ୍ଛାପତ୍ରଦ୍ୱୟକୁ ପରିଶିଷ୍ଟରେ ପ୍ରଦାନ କରାଗଲା।

ଅନ୍ୟପକ୍ଷରେ ଓଡ଼ିଆ ପାଠକମାନଙ୍କ ପାଇଁ ସେ ତାଙ୍କର ସମସ୍ତ ସାହିତ୍ୟିକ କୃତି ଏବଂ ପୁସ୍ତକକୁ କପିରାଇଟ ମୁକ୍ତ କରି ଦେଇଛନ୍ତି, ଯାହା ଫଳରେ ଯେ କେହି ତାଙ୍କର ରଚନାକୁ କାହାରି ଅନୁମତି ବିନା ବ୍ୟବହାର ଓ ପ୍ରକାଶ କରିପାରିବେ।

ଜେପି ହେଉଛନ୍ତି ଜଣେ ଅତ୍ୟନ୍ତ ସ୍ନେହୀ ମଣିଷଟିଏ। ସେ ଯେପରି ଅଜାତଶତ୍ରୁ; ସେପରି ମଧ୍ୟ ବିଶ୍ୱମିତ୍ର। ତାଙ୍କର ବଂଧୁ ଅନେକ। ଆମ ଓଡ଼ିଆ ସାହିତ୍ୟର ରମାକାନ୍ତ ରଥ ବା ସୀତାକାନ୍ତ ମହାପାତ୍ରଙ୍କଠାରୁ ଆରମ୍ଭ କରି ଖ୍ୱାଜା ଅହମ୍ମଦ ଆବାସଙ୍କ ପର୍ଯ୍ୟନ୍ତ; ଏପରି କି ଇଂରାଜୀ ସାହିତ୍ୟର ମୁଲକ ରାଜ ଆନନ୍ଦ ଓ ଆନ ମରୋଙ୍କ ପର୍ଯ୍ୟନ୍ତ ସମସ୍ତେ ତାଙ୍କର ବଂଧୁ। ସେହିପରି ଓଡ଼ିଆ ଚଳଚ୍ଚିତ୍ର ଜଗତର ଧୀର ବିଶ୍ୱାଳ ବା ହେମନ୍ତ ଦାସଙ୍କ ଠାରୁ ଆରମ୍ଭ କରି ହିନ୍ଦୀ ଚଳଚ୍ଚିତ୍ର ଜଗତର ଅମୋଲ ପାଲେକର, ଗୁଲଜାର ଓ ଜୟା ବଚ୍ଚନଙ୍କ ପର୍ଯ୍ୟନ୍ତ ସମସ୍ତେ ତାଙ୍କର ଅତ୍ୟନ୍ତ ପ୍ରିୟ। କେବଳ ଯେ ବଡ଼ ବଡ଼ ଖ୍ୟାତନାମା ଲେଖକ ବା ଚଳଚ୍ଚିତ୍ର ତାରକାମାନେ ତାଙ୍କର ବଂଧୁତ୍ୱର ପରିସର ମଧ୍ୟକୁ ଆସି ପାରିଥିଲେ ତାହା ନୁହେଁ, ମଧ୍ୟମ ବର୍ଗ ଏପରି କି ନୂତନ ପିଢ଼ିର ଲେଖକମାନେ ମଧ୍ୟ ତାଙ୍କର ସେହି ସହୃଦୟତାର ବନ୍ଧନରେ ବାନ୍ଧି ହୋଇ ଯାଇଛନ୍ତି। ଏପରି କି ତାଙ୍କ କାର୍ଯ୍ୟାଳୟରେ ମଧ୍ୟ ଉଚ୍ଚ ପଦସ୍ଥ ଅଫିସରଙ୍କଠାରୁ ଆରମ୍ଭ କରି ତଳିଆ କର୍ମଚାରୀଙ୍କ ପର୍ଯ୍ୟନ୍ତ, ସମସ୍ତଙ୍କୁ ସେ ଏତେ ସ୍ନେହ କରୁଥିଲେ ଯେ ସମସ୍ତେ ତାଙ୍କୁ କେବଳ ଜେପି ଭାବରେ ସମ୍ବୋଧନ କରୁଥିଲେ। ତେଣୁ ସମସ୍ତଙ୍କ ପାଇଁ ସେ ଅତ୍ୟନ୍ତ ପ୍ରିୟ ଜେପି।

ବୟସ କ୍ରମରେ ତାଙ୍କର କୃଷ୍ଣ କେଶ ଶୁକ୍ଳ ହୋଇ ଯାଇଛି ସତ; ହେଲେ ପ୍ରାଜ୍ଞପୁରୁଷ ଭାବରେ ସେ ଯେପରି ସାହିତ୍ୟ କ୍ଷେତ୍ରରେ ମୁରବି ହୋଇ ଆଜି ବିଭିନ୍ନ କ୍ଷେତ୍ରରେ ଦିଗଦର୍ଶନ ଦେଉଛନ୍ତି, ସେତିକି ସଦ୍ୟ କଲେଜ ଯାଉଥିବା ତରୁଣଙ୍କ ପରି ଫୋର ଜି ମୋବାଇଲରେ ହ୍ୱାଟସ୍‌ଅପ ବା ଫେସବୁକ୍ ବ୍ୟବହାର କରୁଛନ୍ତି, ଚିଠି ପତ୍ର ପ୍ରତିବଦଳରେ ମେଲ୍‌ରେ ଓଡ଼ିଆ ଲେଖୁଛନ୍ତି। ତେଣୁ ସେ ତାଙ୍କ ମନନରେ ଯେତିକି ପ୍ରାଜ୍ଞ, ସେତିକି ତରୁଣ। ତାଙ୍କ ଜୀବନ ହେଉଛି ଅନେକ ଜୀବନ, ଏକାନ୍ତ ନିରୋଳା ଜୀବନ, ଯେତିକି ଉଭା – ସେତିକି ପୋତା; ଠିକ୍ ଯେପରି ସେ ଯେତିକି ଅନ୍ତର୍ମୁଖୀ ସେତିକି ବହିର୍ମୁଖୀ।

# ଜେପିଙ୍କ ଦୁଇଟି ଇଚ୍ଛାପତ୍ର

## ଇଚ୍ଛାପତ୍ର (୧)

### WHEN I DIE

When I crossed 78 years of age, I made up my mind that I would plan for a life of two more years, and call it a day when I cross 80. So I have been organising my affairs with this dateline in view.

However, since one does not know when he will die, nor where and how, one has to be prepared for all eventualities. Hence the fallowing for all concerned:

- I believe in one's right to die and so wish that if and when I come to a physical condition which is extremely painful or I am unable to look after myself and have become a burden to others, I may be allowed to decide to opt for death. If my physical mental condition is such that I cannot take a decision, I would not like to continue a so-called life as a vegetable. Any medications and life support system that might be sustaining me should be withdrawn, and I should be allowed to die a peaceful death. Prolonging that life would be cruel on me and a breach of trust. My preference would be to take my last breath at home and not in a hospital.

- On my death, my cadaver should be, as soon as possible, handed over to the Organ Retrieval Banking Organisation (ORBO) of the All India Institute of Medical Sciences (AIIMS), Ansari Nagar, New Delhi-110029. I have pledged my body to them and my ORBO Donor registration number is 17585 dated 11.04.2013. Should I die in a place other than Delhi, ORBO may still be contacted because they may be having arrangements for taking charge of the body at these places. ORBO can be contacted at: Phone 011- 26593444, 011-26588360 Fax 91-11-26588402, and Email **orboindia@yahoo.com.**

- **If my death happens outside Delhi, still call the Delhi numbers who will coordinate. Or else call NOTTO (National Organ Tissue and Transplantation Organisation) at 1800-114770.**

- There should be no photographs taken or flowers placed or crowding around my dead body and it should be quietly handed over to ORBO or failing that cremated (preferably in an electric crematorium) as soon as possible. I want absolutely no religious rites performed, nor any singing or playing of music. There should be no obituary meeting organised or supported by family members or kin.

- On my death, my earthly belongings and moveable and immoveable assets will go to my wife Mitra Das and after her death to my daughter Mona Liza Das.

**J.P. Das**

## ଇଚ୍ଛାପତ୍ର (୨)

**LIVING WILL**
**OF**
**Jagannath Prasad Das**

I, Jagannath Prasad Das, a resident of 305, Hauz Khas Apartments, New Delhi - 110016, being of sound and disposing mind, memory and understanding, do hereby willfully and voluntarily make, publish and declare this to be my LIVING WILL, making known my desire that my life shall not be artificially prolonged under the circumstances set forth below, and do hereby declare:

1. This instrument is directed to my family, my physician(s), my attorney, any medical facility in whose care I happen to be, and to any individual who may become responsible for my health, welfare or affairs.

2. Death is as much a reality as birth, growth, maturity and old age. It is the one certainty of life. Let this statement stand as an expression of my wishes now that I am still of sound mind, for the time when I may no longer take part in decisions for my own future.

3. If at any time I should have a terminal condition and my attending physician has determined that there can be no recovery from such condition and my death is imminent, where the application of life-prolonging procedures and "heroic

measures" would serve only to artificially prolong the dying process, I direct that such procedures be withheld or withdrawn, and that I be permitted to die naturally. I do not fear death itself as much as the indignities of deterioration, dependence and hopeless pain. I therefore ask that medication be mercifully administered to me and that any medical procedures be performed on me which are deemed necessary to provide me with comfort, care or to alleviate pain.

4. In the absence of my ability to give directions regarding the use of such life-prolonging procedures, it is my intention that this declaration shall be honored by my family and physician as the final expression of my legal right to refuse medical or surgical treatment and accept the consequences for such refusal.

5. In the event that I am diagnosed as comatose, incompetent, or otherwise mentally or physically incapable of communication, I appoint my daughter Mona Liza Das, a resident of 179 West Fox Hill Drive, Buffalo Grove, Illinois 60089 – 7705, USA, to make binding decisions concerning my treatment.

6. I understand the full import of this declaration and I am emotionally and mentally competent to make this declaration. I hope you, who care for me, will feel morally bound to follow its mandate. I recognize that this appears to place a heavy responsibility upon you, but it is with the intention of relieving you of such responsibility and of placing it upon myself, in accordance with my strong convictions, that this statement is made.

**J.P. Das**

# ସମୟାନୁକ୍ରମରେ ଜେପି

୧୯୩୬ : ଜଗନ୍ନାଥ ପ୍ରସାଦ ଦାସଙ୍କ ଜନ୍ମ (୨୬.୦୪.୧୯୩୬ / ବାଣପୁର)

୧୯୪୨ : ବାଣପୁର ସ୍କୁଲରେ ଅଧ୍ୟୟନ

୧୯୪୮ : ମିଶନ ସ୍କୁଲରେ ଅଧ୍ୟୟନ

୧୯୫୧ : ଖ୍ରୀଷ୍ଟ ମହାବିଦ୍ୟାଳୟରେ ଅଧ୍ୟୟନ ଓ ପ୍ରଥମ କବିତା ସଂକଳନ 'ସ୍ତବକ'ର ପ୍ରକାଶନ

୧୯୫୩ : ରେଭେନ୍‌ସା ମହାବିଦ୍ୟାଳୟରେ ଅଧ୍ୟୟନ (ଅର୍ଥନୀତି ସମ୍ମାନ)

୧୯୫୫ : ଆହ୍ଲାବାଦ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ (ରାଜନୀତି ବିଜ୍ଞାନରେ ସ୍ନାତକୋତ୍ତର ଅଧ୍ୟୟନ)

୧୯୫୭ : ଆହ୍ଲାବାଦ ବିଶ୍ୱବିଦ୍ୟାଳୟରେ ସାମୟିକ ଅଧ୍ୟାପକ ଭାବେ ଯୋଗଦାନ

୧୯୫୮ : ଭାରତୀୟ ପ୍ରଶାସନିକ ସେବା କ୍ରମରେ ଦିଲ୍ଲୀ ଟ୍ରେନିଂ ସ୍କୁଲରେ ଯୋଗଦାନ

୧୯୫୯ : ଓଡ଼ିଶାକୁ ଫେରି ଗଞ୍ଜାମର ଛତ୍ରପୁରରେ ଆସିଷ୍ଟାଣ୍ଟ କଲେକ୍ଟର ଭାବରେ ଯୋଗଦାନ

୧୯୬୦ : ଦୁଇଟି ନାଟକ:'ଜଣେ ଜଣକ ପାଇଁ' ଓ 'ଆକସ୍ମିକ'ର ସଂରଚନା ଓ ମିତ୍ରା ମହାନ୍ତିଙ୍କ ସହିତ ବିବାହ ସଂପନ୍ନ (ଜୁନ,୧୯୬୦)

୧୯୬୨ : ପ୍ରଥମ କନ୍ୟା ମୋନାଲିସା (ମୋନା)ର ଜନ୍ମ

୧୯୬୩-୧୯୬୬: କଳାହାଣ୍ଡିରେ କଲେକ୍ଟର

୧୯୬୬-୧୯୬୮: ଭୁବନେଶ୍ୱର ସଚିବାଳୟ

୧୯୬୮-୧୯୭୦ : କାଳୀଚରଣ ପଟ୍ଟନାୟକଙ୍କ ନିମନ୍ତ୍ରଣ କ୍ରମେ ବସନ୍ତୋତ୍ସବରେ ଯୋଗଦାନ ଓ ଗୁରୁ ହରିଦାସ ଚକ୍ରବର୍ତ୍ତୀଙ୍କଠାରୁ ଗିଟାର ଶିକ୍ଷା ଗ୍ରହଣ

୧୯୬୯-୧୯୭୦ : ଡାଇରେକ୍ଟର, ଶିଳ୍ପ ବିଭାଗ, କଟକ ଓ ପ୍ରଥମ ବିଦେଶ ଯାତ୍ରା

୧୯୭୧-୧୯୭୩ : ଭୁବନେଶ୍ୱର ସଚିବାଳୟ

୧୯୭୧ : ଏକକ ଚିତ୍ରକଳାର ପ୍ରଦର୍ଶନୀ ଓ 'ପ୍ରଥମ ପୁରୁଷ' କବିତା ସଂକଳନର ପ୍ରଥମ ପ୍ରକାଶ

୧୯୭୨ : 'ସୂର୍ଯ୍ୟାସ୍ତ ପୂର୍ବରୁ' ନାଟକ ରଚନା ଓ କଲିକତାରେ ଏହାର ବଂଗଳା ଅନୁବାଦର ମଞ୍ଚସ୍ଥ

୧୯୭୩ : ମିଳିତ ଚିତ୍ରକଳା ପ୍ରଦର୍ଶନୀରେ ଯୋଗଦାନ ଓ ପରେ ପରେ ଦିଲ୍ଲୀ ଯାତ୍ରା

୧୯୭୬ : 'ସୂର୍ଯ୍ୟାସ୍ତ ପୂର୍ବରୁ'ର ହିନ୍ଦୀ ଅନୁବାଦ ଦିଲ୍ଲୀରେ ମଞ୍ଚସ୍ଥ, ପ୍ରଥମ ପୁରୁଷର ଇଂରାଜୀ ଅନୁବାଦ ପ୍ରକାଶିତ, 'ଅନ୍ୟସବୁ ମୃତ୍ୟୁ' କବିତା ସଂକଳନର ପ୍ରକାଶ ଓ ଜେପିଙ୍କ ନିଶ ରଖିବା ଆରମ୍ଭ

୧୯୭୭ : 'ସୂର୍ଯ୍ୟାସ୍ତ ପୂର୍ବରୁ' ନାଟକର ପ୍ରକାଶନ

୧୯୭୮-୧୯୭୯ : IIPA, Delhi ରେ ଏମ୍.ଫିଲ୍ ଓ Before the Sunsetର ପ୍ରକାଶନ

୧୯୭୮ : ରବି ରାୟଙ୍କ ଓଡ଼ିଶା ଗ୍ରାମ ବିକାଶ ଫାଉଣ୍ଡେସନର ଟ୍ରଷ୍ଟି

୧୯୭୯ : କବିତା ସଂକଳନ 'ଯେ ଯାହାର ନିର୍ଜନତା'ର ପ୍ରକାଶନ

୧୯୭୯-୧୯୮୧: ହୋମି ଭାଭା ଫେଲୋସିପ ଲାଭ ପରେ ଚାକିରୀରୁ ଛୁଟି ନେଇ ଗବେଷଣାରତ

୧୯୮୦ : ପ୍ରଥମ କ୍ଷୁଦ୍ରଗଳ୍ପ ‘ଶବ୍ଦଭେଦ’ ପ୍ରକାଶନ ଓ ଭୁବନେଶ୍ୱରର ‘ଏବଂ ଆମେ’ ସଂସ୍ଥା ଦ୍ୱାରା ‘ସବାଶେଷ ଲୋକ’ର ମଞ୍ଚସ୍ଥ

୧୯୮୧-୧୯୮୩ : ଆବାସିକ କମିଶନର, ଓଡ଼ିଶା ଭବନ,ଦିଲ୍ଲୀ

୧୯୮୧ : ‘ଅସଂଗତ ନାଟକ’ର ପ୍ରକାଶନ ଓ ‘ପ୍ରଥମ ପୁରୁଷ’ର ଦଶବର୍ଷ ପୂର୍ତ୍ତି ଉପଲକ୍ଷେ ‘କିଛି ବର୍ଷା କିଛି ରାସ୍ତା କିଛି ନିର୍ଜନତା’ ଶିରୋନାମାରେ ତାହାର ପୁନର୍ମୁଦ୍ରଣ

୧୯୮୨ : Puri Paintingsର ପ୍ରକାଶନ ଓ କବିତା ସଂକଳନ ‘ଅନ୍ୟଦେଶ ଭିନ୍ନ ସମୟ’ ଓ ଗଳ୍ପ ସଂକଳନ ‘ଭବନାଥ ଓ ଅନ୍ୟମାନେ’ର ପ୍ରକାଶନ

୧୯୮୩ : ଗଳ୍ପ ସଂକଳନ ‘ଦିନଚର୍ଯ୍ୟା’ ଓ ନାଟକ ‘ପୂର୍ବରାଗ’ ସହିତ The Magic Deer and Other stories ଓ Two Plays (ଇଂରାଜୀ ଅନୁବାଦ)ର ପ୍ରକାଶନ

୧୯୮୪ : ‘ରେସିଡେଣ୍ଟ କମିଶନର’ ପଦବୀରୁ ସରକାରୀ ଚାକିରିର ପ୍ରତ୍ୟାଖ୍ୟାନ ଓ ବିଷୁବ ପୁରସ୍କାର ଲାଭ, Asian Gamesର Art Committeeର ସଂପାଦକ, Festival of Indiaର ପରାମର୍ଶଦାତା, INTACHର ଓଡ଼ିଶା କାର୍ଯ୍ୟକୁ ପର୍ଯ୍ୟବେକ୍ଷଣ, The Poetry Society of India ର ଗଠନ

୧୯୮୫ : ‘Chitra Pothi’ର ପ୍ରକାଶନ ଓ CFSI ର ସଦସ୍ୟ

୧୯୮୬ : ଗଳ୍ପ ସଂକଳନ ‘ଆମେ ଯେଉଁମାନେ’ର ପ୍ରକାଶନ

୧୯୮୬-୨୦୦୦ : The Poetry Society of India ର ସଭାପତି

୧୯୮୭ : ଗଳ୍ପ ସଂକଳନ ‘ସାକ୍ଷାତକାର’ ଓ ‘ଛଅଟି ଝିଅ’ର ପ୍ରକାଶନ, Films for Children ର ସଂପାଦନା

୧୯୮୮ : କବିତା ସଂକଳନ ‘ଯାତ୍ରାର ପ୍ରଥମ ପାଦ’ ଓ The Forbidden Street and Other Storiesର ପ୍ରକାଶନ

୧୯୮୯ : ମୁଲକ୍ ରାଜ ଆନନ୍ଦଙ୍କ ‘କୁଲି’ ଉପନ୍ୟାସର ଅନୁବାଦ ପ୍ରକାଶନ (ମିତ୍ରାଙ୍କ ସହିତ) ଓ Absurd Plays ର ପ୍ରକାଶନ

୧୯୯୦ : ଇଷ୍ଟରଭିଉ କ୍ଷୁଦ୍ରଗଳ୍ପର ଟେଲିଫିଲ୍ମ ନିର୍ମାଣ ଓ କବିତା ସଂକଳନ 'ଆହ୍ନିକ'ର ପ୍ରକାଶନ, ଫିନଲ୍ୟାଣ୍ଡରେ ହେଉଥିବା ଶିଶୁ ଚଳଚ୍ଚିତ୍ର ମହୋତ୍ସବରେ ସଭାପତି

୧୯୯୧ : 'ଆହ୍ନିକ' କବିତା ସଂକଳନ ପାଇଁ ସାହିତ୍ୟ ଅକାଦେମୀ ପୁରସ୍କାର ଓ କବିତା ସଂକଳନ 'ସ୍ଥିରଚିତ୍ର' ଓ 'ପ୍ରେମ କବିତା' (ସଂକଳନ), ଅନୁବାଦ ପୁସ୍ତକ Growing An Indian Star ଓ Palm Leaf Miniaturesର ପ୍ରକାଶନ

୧୯୯୨ : ଐତିହାସିକ ଉପନ୍ୟାସ 'ଦେଶ କାଳ ପାତ୍ର', ଗଳ୍ପ ସଂକଳନ 'ପ୍ରିୟ ବିଦୂଷକ', ଅନୁବାଦ ପୁସ୍ତକ Under Silent Sun ର ପ୍ରକାଶନ

୧୯୯୩ : ନାଟକ 'ସୁନ୍ଦରଦାସ', 'ଶ୍ରେଷ୍ଠ କବିତା'(ସଂକଳନ), ଶିଶୁ ସାହିତ୍ୟ 'ଆଳିମାଳିକା' ଓ 'ଆଲୁକୁଚି ମାଲୁକୁଚି'ର ପ୍ରକାଶନ ଓ Oriya Short Stories (୧୯୮୩) ଓ Kavita -93 ର ସଂପାଦନା

୧୯୯୪ : କବିତା ସଂକଳନ 'ସଚରାଚର'ର ପ୍ରକାଶନ

୧୯୯୪ : ୧୯୯୬ :ଭାରତ ସରକାରଙ୍କ ସଂସ୍କୃତି ବିଭାଗ ତରଫରୁ ଏମେରିଟସ ଫେଲୋ

୧୯୯୫ : କବିତା ସଂକଳନ 'ସ୍ମୃତିର ସହର', ଗଳ୍ପ ସଂକଳନ 'ଶେଷ ପର୍ଯ୍ୟନ୍ତ' ଓ ପୂର୍ବାପର-୧ (ସମଗ୍ର କବିତା : ୧୯୭୦-୭୯)ର ପ୍ରକାଶନ

୧୯୯୫ : ୨୦୦୦ : National School of Dramaର Vice-Chairman

୧୯୯୬ : ପୂର୍ବାପର-୨ (ସମଗ୍ର କବିତା: ୧୯୮୦-୯୪)ର ପ୍ରକାଶନ

୧୯୯୬-୧୯୯୮ : କେ.କେ.ବିରଲା ଫାଉଣ୍ଡେସନ ଫେଲୋ

୧୯୯୬-୧୯୯୯ : ଉତ୍କଳ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ ସଭ୍ୟ

୧୯୯୭ : 'ରଙ୍ଗଲିପି' (ନାଟକ ସଂକଳନ)ର ପ୍ରକାଶନ

୧୯୯୮ : 'ପ୍ରିୟ ବିଦୂଷକ' ପାଇଁ ଶାରଳା ପୁରସ୍କାର ଓ କବିତା ସଂକଳନ 'ପରିକ୍ରମା' ପ୍ରକାଶନ

୧୯୯୯ : ଗୁଲଜାରଙ୍କ କବିତାର ଇଂରାଜୀ ଅନୁବାଦ Autumn Moon ପ୍ରକାଶନ

୨୦୦୦ : ନାଟକ ପାଇଁ କଲିକତାର 'ନାନ୍ଦୀକାର' ପୁରସ୍କାର, ଗଳ୍ପ ସଂକଳନ 'ଇଚ୍ଛାପତ୍ର' ଓ ସମଗ୍ର ଗଳ୍ପ ସଂକଳନ 'କଥାଯାତ୍ରା'ଓ ଅନୁବାଦ 'ସ୍ୱପ୍ନ ବିଚାର'ର ପ୍ରକାଶନ

୨୦୦୧ : Lovelines (Poems) ଓ Pukka Sahib (Short Stories) ପ୍ରକାଶନ

୨୦୦୨ : 'ସୁନ୍ଦରଦାସ' ନାଟକ, Miss 'X' ଓ Alimalika ପ୍ରକାଶନ

୨୦୦୩ : 'ଅ ଆ ଇ ଏବଂ କ ଖ ଗ' ଶିଶୁ ସାହିତ୍ୟ (ମିତ୍ରାଙ୍କ ସହିତ) ପ୍ରକାଶନ ସହିତ ରାଜା ରାମମୋହନ ରାୟ ଲାଇବ୍ରେରୀ ଫାଉଣ୍ଡେସନର ସଭ୍ୟ

୨୦୦୪ : କବିତା ସଂକଳନ 'ଅସମୟ' ପ୍ରକାଶନ

୨୦୦୬ : 'ପରିକ୍ରମା' ପାଇଁ ସରସ୍ୱତୀ ସମ୍ମାନ

୨୦୦୮ : ଶିଶୁ କବିତା 'ଅନାବନା'ର ପ୍ରକାଶ

୨୦୦୯ : ଇନ୍ଦ୍ରଧନୁ ଆଖି ଓ କବିତାର ଦୀର୍ଘ ଜୀବନ (ଗଳ୍ପ ସଂକଳନ) ପ୍ରକାଶନ

୨୦୧୦ : ନିଜ ସାରସ୍ୱତ ସୃଷ୍ଟି ସଂପର୍କରେ ସୂଚନାର ଭିଡିଓର ଉନ୍ମୋଚନ

୨୦୧୧ : କବିତା ସମଗ୍ରର ପ୍ରକାଶନ ସହିତ ଜୟପୁର ଲିଟେରେଚର ଫେଷ୍ଟିଭାଲରେ A Time Elsewhere ଉପରେ ବିଷଦ୍ ଆଲୋଚନାର ଭିଡିଓର ଉନ୍ମୋଚନ

୨୦୧୩ : ଭୁବନେଶ୍ୱରରେ ଆୟୋଜିତ ହୋଇଥିବା ଲିଟେରାରୀ ଫେଷ୍ଟିଭାଲରେ ପ୍ରଦତ୍ତ ସଂପୂର୍ଣ୍ଣ ଅଭିଭାଷଣକୁ Think Literature ପକ୍ଷରୁ କରାଯାଇଥିବା ଭିଡିଓର ଉନ୍ମୋଚନ

୨୦୧୪ : 'ପ୍ରଥମ ପୁରୁଷ'ର ତୃତୀୟ ସଂସ୍କରଣ, 'ଶ୍ରେଷ୍ଠ ଗଳ୍ପ' ଓ Selected Poems ପ୍ରକାଶନ

୨୦୧୫ : 'ଆମ ଓଡ଼ିଆ ଆମର ଓଡ଼ିଶା' ପ୍ରକାଶନ ଓ ସୃଜନିକା ସଂସ୍ଥା ତରଫରୁ 'ଜଗନ୍ନାଥ ପ୍ରସାଦ ଦାସ ରଚନା ସମଗ୍ର'ର ଡିଜିଟାଲ ସଂକଳନ ପ୍ରସ୍ତୁତି ଓ ସାହିତ୍ୟ ଏକାଡେମୀ ପକ୍ଷରୁ ଜଗନ୍ନାଥ ପ୍ରସାଦ ଦାସଙ୍କ ଉପରେ ଏକ ପ୍ରାମାଣିକ ଚଳଚ୍ଚିତ୍ରର ପ୍ରସ୍ତୁତି

୨୦୧୬ : ଶିଶୁ ସାହିତ୍ୟ 'ଆନମାନ'ର ପ୍ରକାଶନ

୨୦୧୭ : 'ଆମ ଭାଷା ଆମ ସଂସ୍କୃତି'ର ପ୍ରକାଶନ

୨୦୧୮ : odia bibhaba ୱେବସାଇଟରେ ସୃଜନିକା ତରଫରୁ ଜଗନ୍ନାଥ ପ୍ରସାଦ ଦାସଙ୍କ ସମସ୍ତ ସାରସ୍ୱତ କୃତି ପାଠକମାନଙ୍କ ପାଇଁ ଉତ୍ସର୍ଗୀକୃତ

୨୦୧୯ : ଉତ୍କଳ ସାହିତ୍ୟ ସମାଜର ସମ୍ମାନଜନକ ବରେଣ୍ୟ ସଦସ୍ୟ ପଦ ପ୍ରଦାନ

ଠିକଣା : ୧୯୮୫-୨୦୧୮ ନୂଆଦିଲ୍ଲୀସ୍ଥିତ ବାସଭବନରେ ଓ ନଭେମ୍ବର ୨୦୧୮ରୁ ୧୦୪, ଶୁଭମ୍, ସୂର୍ଯ୍ୟନଗର, ଭୁବନେଶ୍ୱର-୭୫୧୦୦୩ରେ ଅବସ୍ଥାନ

ଦୂରଭାଷ : 7292093609, 9868170180

ଇ-ମେଲ : prathampurush@gmail.com

# ବୃତ୍ତ୍ୟାନୁକ୍ରମରେ ଜେପି

**ଅଗଷ୍ଟ ୧୯୫୭ ରୁ ମାର୍ଚ୍ଚ ୧୯୫୮ :**

ଆହ୍ଲାବାଦ ବିଶ୍ୱବିଦ୍ୟାଳୟରେ ଆସିଷ୍ଟାଣ୍ଟ ପ୍ରଫେସର ଭାବରେ ରାଜନୀତି ବିଜ୍ଞାନରେ ଅଧ୍ୟାପନା

**ମଇ ୧୯୫୮ ରୁ ଅପ୍ରେଲ ୧୯୬୦ :**

ଭାରତ ସରକାରଙ୍କ ଅଧୀନରେ ଆସିଷ୍ଟାଣ୍ଟ କଲେକ୍ଟର ଭାବରେ ଅବସ୍ଥାପିତ ହୋଇ ସାଧାରଣ ଓ ରାଜ୍ୟ ପରିଚାଳନା ସଂକ୍ରାନ୍ତରେ ପ୍ରଶିକ୍ଷଣ

**ଅପ୍ରେଲ ୧୯୬୦ ରୁ ଜୁଲାଇ ୧୯୬୧ :**

ଓଡ଼ିଶା ସରକାରଙ୍କ ଅଧୀନରେ ସବ ଡିଭିଜିନାଲ ଅଫିସର ଭାବରେ ସାଧାରଣ ପରିଚାଳନା ସହିତ ମାଜିଷ୍ଟ୍ରେରିଆଲ କାର୍ଯ୍ୟ ନିର୍ବାହ

**ଜୁଲାଇ ୧୯୬୧ ରୁ ଅଗଷ୍ଟ ୧୯୬୨ :**

ଓଡ଼ିଶା ସରକାରଙ୍କ ବିତ୍ତ ବିଭାଗ (ବ୍ୟୟ ନିୟନ୍ତ୍ରଣ)ରେ ଅଣ୍ଡର ସେକ୍ରେଟାରୀ ଭାବେ କାର୍ଯ୍ୟରତ

**ଅଗଷ୍ଟ ୧୯୬୨ ରୁ ନଭେମ୍ବର ୧୯୬୩ :**

ଓଡ଼ିଶା ସରକାରଙ୍କ ଶିଳ୍ପ ବିଭାଗ (ଶିଳ୍ପ ସମୃଦ୍ଧି, ରପ୍ତାନି, ହସ୍ତତନ୍ତ ଓ ହସ୍ତଶିଳ୍ପ, ଗ୍ରମୀଣ ତଥା କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠାନ)ରେ ଡେପୁଟି ସେକ୍ରେଟାରୀ

**ନଭେମ୍ବର ୧୯୬୩ ରୁ ନଭେମ୍ବର ୧୯୬୬ :**

ଓଡ଼ିଶା ସରକାରଙ୍କ ଅଧୀନରେ କଲେକ୍ଟର ଓ ଜିଲ୍ଲାପାଳ (ଜିଲ୍ଲା ପରିଚାଳନା) ଭାବରେ ଅବସ୍ଥାପିତ

**ନଭେମ୍ବର ୧୯୬୬ ରୁ ଜୁନ ୧୯୬୮ :**

ଓଡ଼ିଶା ସଚିବାଳୟରେ ରାଜ୍ୟ କ୍ରୟ ସଂସ୍ଥା ସହିତ ରପ୍ତାନି ସଂବୃଦ୍ଧ ବିଭାଗର ନିର୍ଦ୍ଦେଶକ, ଓଡ଼ିଶା ସରକାରଙ୍କ ଶିଳ୍ପ ବିଭାଗର ଡେପୁଟି ସେକ୍ରେଟାରୀ (ରପ୍ତାନୀ ସଂବୃଦ୍ଧି, ଶିଳ୍ପ ବିକାଶ, ହସ୍ତତନ୍ତ ଓ ହସ୍ତଶିଳ୍ପ, ଗ୍ରାମୀଣ ଓ ସ୍ୱଳ୍ପବିତ୍ତୀୟ ଶିଳ୍ପ ଓ ରାଜ୍ୟର କ୍ରୟ ବିଭାଗ)

**ଜୁନ ୧୯୬୮ ରୁ ଜୁଲାଇ ୧୯୬୮ :**

ଓଡ଼ିଶା ସଚିବାଳୟରେ ରାଜ୍ୟ ପରବହନ ବିଭାଗ (ରାଜ୍ୟ ପରବହନ ସେବା ଓ ପରିବହନ ଆଇନ)ର ଯୁଗ୍ମ ସଚିବ ଭାବରେ କାର୍ଯ୍ୟରତ

**ଜୁଲାଇ ୧୯୬୮ ରୁ ସେପ୍ଟେମ୍ବର ୧୯୭୦:**

ଓଡ଼ିଶା ସରକାରଙ୍କର ଶିଳ୍ପ ବିଭାଗର ନିର୍ଦ୍ଦେଶକ (ହସ୍ତ ତନ୍ତ ଓ ହସ୍ତଶିଳ୍ପ ସହିତ ଗ୍ରାମୀଣ ଓ ସ୍ୱଳ୍ପ ବିତ୍ତୀୟ ଶିଳ୍ପ ଓ ଜନସାଧାରଣଙ୍କ ତତ୍ତ୍ୱାବଧାନ)

**ସେପ୍ଟେମ୍ବର ୭୦ରୁ ଫେବୃଆରୀ ୭୧ :**

ଓଡ଼ିଶା ସଚିବାଳୟରେ ବିତ୍ତ ବିଭାଗ (ବିତ୍ତୀୟ ଯୋଜନା ଓ ବ୍ୟୟ ନିୟନ୍ତ୍ରଣ) ବିଭାର ଅତିରିକ୍ତ ସଚିବ

**ଫେବୃଆରୀ ୭୧ ରୁ ଅପ୍ରେଲ ୭୨ :**

କାର୍ଯ୍ୟ ଓ ପରିବହନ ବିଭାଗ (ଜନସାଧାରଣଙ୍କ ଗୃହ ନିର୍ମାଣ ଓ ରାସ୍ତା କାର୍ଯ୍ୟ ଏବଂ ପରିବହନ ସେବା)ର ସଚିବ

**ଅପ୍ରେଲ ୭୨ ରୁ ଅପ୍ରେଲ ୭୩ :**

ଶିଳ୍ପ ଓ ବାଣିଜ୍ୟ ବିଭାଗର ସଚିବ (ରାଜ୍ୟରେ ଶିଳ୍ପ ଓ ବାଣିଜ୍ୟର ସଂବୃଦ୍ଧି, ହସ୍ତତନ୍ତ ଓ ହସ୍ତଶିଳ୍ପ, ଗ୍ରାମୀଣ ତଥା ସ୍ୱଳ୍ପବିତ୍ତୀୟ ଔଦ୍ୟୋଗିକ ଉପକ୍ରମ ବା ସାର୍ବଜନିକ କ୍ଷେତ୍ରର ଉପକ୍ରମରେ ପ୍ରତିଷ୍ଠିତ ବିଭିନ୍ନ ବୋର୍ଡର ନିର୍ଦ୍ଦେଶକ, ବାଣିଜ୍ୟିକ ପରବହନ ଓ ସରକାରୀ ମୁଦ୍ରଣ ବିଭାଗ)

**ଅପ୍ରେଲ ୭୩ ରୁ ଜୁନ ୭୩ :**

ଓଡ଼ିଶା ସରକାରଙ୍କ ବିତ୍ତ ବିଭାଗର ସଚିବ (ବିତ୍ତୀୟ ଯୋଜନା ଓ ବ୍ୟୟ ନିୟନ୍ତ୍ରଣ)

**ଜୁନ ୭୩ ରୁ ଜୁନ ୭୬ :**

ଭାରତ ସରକାରଙ୍କ ବାଣିଜ୍ୟ ମନ୍ତ୍ରଣାଳୟର ନିର୍ଦ୍ଦେଶକ (ଇଂଜିନିୟରିଙ୍ଗ ଦ୍ରବ୍ୟର ରପ୍ତାନି ସଂବୃଦ୍ଧି ଓ ରପ୍ତାନି ଦ୍ରବ୍ୟର ପରବହନ)

**ଜୁନ ୭୬ ରୁ ଜୁନ ୭୮ :**

ଭାରତ ସରକାରଙ୍କ ବିତ୍ତ ମନ୍ତ୍ରଣାଳୟର ଯୁଗ୍ମ ସଚିବ (ବ୍ୟୟ ନିୟନ୍ତ୍ରଣ ଓ ବିତ୍ତୀୟ ପରିଚାଳନା)

**ଜୁନ ୭୮ ରୁ ଜାନୁଆରୀ ୭୯ :**

ଇଣ୍ଡିଆନ ଇନଷ୍ଟିଚ୍ୟୁଟ ଅଫ ପବ୍ଲିକ ଆଡମିନିଷ୍ଟ୍ରେସନ (**IIPA, Delhi**)ରେ ପବ୍ଲିକ ଆଡମିନିଷ୍ଟ୍ରେସନରେ ଏମ୍. ଫିଲ ଅଧ୍ୟୟନ

**ଫେବୃଆରୀ ୮୧ ରୁ ଡିସେମ୍ବର ୮୩ :**

ଓଡ଼ିଶା ସରକାରଙ୍କ ଆବାସିକ କମିଶନର

**ଜାନୁଆରୀ ୮୪ ରୁ ଅଦ୍ୟାବଧି :**

୧୯୮୪ ମସିହା ଜାନୁଆରୀ ମାସରେ ଜେପି ସ୍ୱଇଚ୍ଛାରେ ସରକାରୀ ବୃତ୍ତିରୁ ଅବସର ଗ୍ରହଣ କରି ପରବର୍ତ୍ତୀ କାଳରେ ଦେଶର ବିଭିନ୍ନ ସାରସ୍ୱତ ତଥା ସାଂସ୍କୃତିକ କାର୍ଯ୍ୟରେ ମନୋନିବେଶ ଜାରି ରଖିଲେ। ଯେପରି ୧୯୮୪-୧୯୮୬ ମଧ୍ୟରେ ସେ ଯୁକ୍ତରାଷ୍ଟ୍ର ଆମେରିକା ଓ ଫ୍ରାନ୍ସରେ ଆୟୋଜିତ ହୋଇଥିବା 'ଫେଷ୍ଟିଭାଲ ଅଫ ଇଣ୍ଡିଆ'ର ପରାମର୍ଶଦାତା ଭାବରେ, ଭାରତର ଶିଶୁ ଚଳଚ୍ଚିତ୍ର ସମାଜର ସଦସ୍ୟ ଭାବରେ ଓ ଦୂରଦର୍ଶନ ପାଇଁ ସିନେମା ଚୟନ କମିଟିର ସଦସ୍ୟ ଭାବରେ ଅବସ୍ଥାପିତ ହୋଇ ବହୁତ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ନିର୍ବାହ କରି ଆସିଛନ୍ତି। ଏବଂ ଅଦ୍ୟାବଧି ସାରସ୍ୱତ କର୍ମରେ ନିଜକୁ ସଂପୂର୍ଣ୍ଣ ଭାବରେ ଜଡ଼ିତ ରଖିଛନ୍ତି।

# ଜେପିଙ୍କ ସାରସ୍ୱତ ସୃଷ୍ଟିର ସୂଚୀ

**କବିତା :**

(୧) ସ୍ତବକ (୧୯୫୧),(୨) ପ୍ରଥମ ପୁରୁଷ (୧୯୭୧),(୩) ଅନ୍ୟସବୁ ମୃତ୍ୟୁ (୧୯୭୬), (୪) ଯେ ଯାହାର ନିର୍ଜନତା (୧୯୭୯), (୫) ଅନ୍ୟ ଦେଶ ଭିନ୍ନ ସମୟ (୧୯୮୨),(୬) ଯାତ୍ରାର ପ୍ରଥମ ପାଦ (୧୯୮୮), (୭) ଆହ୍ନିକ (୧୯୯୦), (୮) ସ୍ଥିରଚିତ୍ର (୧୯୯୧), (୯) ସଚରାଚର (୧୯୯୪), (୧୦) ସ୍ମୃତିର ସହର (୧୯୯୫), (୧୧) ପରିକ୍ରମା (୧୯୯୮), (୧୨) ଅସମୟ (୨୦୦୪)

**କାହାଣୀ ସଂଗ୍ରହ:**

(୧) ଭବନାଥ ଓ ଅନ୍ୟମାନେ (୧୯୮୨), (୨) ଦିନଚର୍ଯ୍ୟା (୧୯୮୩), (୩) ଆମେ ଯେଉଁମାନେ (୧୯୮୬), (୪) ସାକ୍ଷାତକାର (୧୯୮୭), (୫) ପ୍ରିୟ ବିଦୂଷକ (୧୯୯୨), (୬) ଶେଷ ପର୍ଯ୍ୟନ୍ତ (୧୯୯୫), (୭) ଇଚ୍ଛାପତ୍ର (୨୦୦୦), (୮) ଇନ୍ଦ୍ରଧନୁ, ଆଖି ଓ କବିତାର ଦୀର୍ଘ ଜୀବନ (୨୦୦୯)

**ନାଟକ :**

(୧) ସୂର୍ଯ୍ୟାସ୍ତ ପୂର୍ବରୁ (୧୯୭୭), (୨) ସବା ଶେଷ ଲୋକ (୧୯୮୦), (୩) ଅସଂଗତ ନାଟକ (୧୯୮୧), (୪) ପୂର୍ବରାଗ (୧୯୮୩), (୫) ସୁନ୍ଦର ଦାସ (୧୯୯୩)

**ଉପନ୍ୟାସ :**

(୧) ଦେଶ କାଳ ପାତ୍ର (୧୯୯୨), (୨) ଶୁକପକ୍ଷୀ ପ୍ରଶ୍ନ (ଅସଂପୂର୍ଣ୍ଣ / ନବଗୁଂଜର ନାମରେ ପୂର୍ଣ୍ଣତା ପ୍ରାପ୍ତିର ଅପେକ୍ଷାରେ ରହିଛି ।)

**ଶିଶୁ କବିତା :**

(୧) ଆଳିମାଳିକା (୧୯୯୩), (୨) ଆଲୁକୁଚି ମାଲୁକୁଚି (୧୯୯୩), (୩) ଅ ଆ ଇ ଏବଂ କ ଖ ଗ (୨୦୦୩), (୪) ଅନାବନା (୨୦୦୮. ଆନମାନ (୨୦୧୬)

**ସଂକଳନ:**

(୧) ଛଅଟି ଝିଅ (୧୯୮୭),(୨) ପ୍ରେମ କବିତା (୧୯୯୧), (୩) ଶ୍ରେଷ୍ଠ କବିତା (୧୯୯୩), (୪) ପୂର୍ବାପର -୧ (୧୯୯୫), (୫) ପୂର୍ବାପର -୨(୧୯୯୬), (୬) ରଙ୍ଗଲିପି (୧୯୯୭), (୭) କଥାଯାତ୍ରା (୨୦୦୦), (୮) କବିତା ସମଗ୍ର (୨୦୧୧)

**ପ୍ରବନ୍ଧ ସଂକଳନ :**

(୧) ଆମ ଓଡ଼ିଆ ଆମର ଓଡ଼ିଶା (୨୦୧୫), (୨) ଆମ ଭାଷା ଆମ ସଂସ୍କୃତି (୨୦୧୭)

**ଗବେଷଣାତ୍ମକ ନିବନ୍ଧ:**

(1) Puri Paintings : The Chitrakara and His work (1982), (2) Chitra Pothi : Illustrated Palm Leaf Manuscripts (1985), (3) Palm Leaf Miniatures (1991)

**ସଂପାଦନା:**

(1) Oriya Short Stories (1993), (2) Films for Children (1987), (3) Kabita-93

**ଅନୁବାଦ:**

(୧) କୁଲି (୧୯୮୯), (୨) ସ୍ୱପ୍ନ ବିଚାର (୨୦୦୦), (3) Growing an Indian Star (1991) (4) Under a Silent Sun (1992), (5) Autumn Moon (Urdu Poems by Gulzar) (1999)

# ଜେପିଙ୍କ ସାରସ୍ୱତ କୃତିର ଭାଷାନ୍ତର

**ହିନ୍ଦୀ ଭାଷାରେ: କବିତା**

(୧) ପ୍ରଥମ ପୁରୁଷ (୧୯୭୫), (୨) କଇ ତରହକୀ ଦିନ (୧୯୮୧), (୩) ଆପନା ଆପନା ଏକାନ୍ତ (୧୯୮୫), (୪) ଲୌଟତେ ସମୟ (୧୯୮୯), (୫) ଶବ୍ଦଭେଦ (୧୯୯୧), (୬) ସ୍ଥିରଚିତ୍ର (୧୯୯୩), (୭) ଆହ୍ନିକ (୧୯୯୩), (୮) ସଚରାଚର (୧୯୯୫), (୯) ସ୍ମୃତିୟୌଁ କା ସହର (୨୦୦୬), (୧୦) ପରିକ୍ରମା (୨୦୦୭), (୧୧) ଗୁଜରାତ୍ କେ ବାଦ (୨୦୧୪),(୧୨) କବିତାଏଁ (ଭାରତୀୟ ସାହିତ୍ୟ କେନ୍ଦ୍ର, ଭୋପାଲ ପକ୍ଷରୁ ପ୍ରକାଶିତ)

**ହିନ୍ଦୀ ଭାଷାରେ: ଗଳ୍ପ**

(୧) ମାୟାବୀ ହିରନ (୧୯୮୩), (୨) ସନ୍ୟାସ କା ରାସ୍ତା (୧୯୮୮), (୩) ତିସିରି ଦୁନିୟା (୧୯୯୦), (୪) ମକଡ଼ୀ କା ଜାଲ (୧୯୯୦), (୫) ପ୍ରିୟ ବିଦୂଷକ (୨୦୦୩) ଓ (୬) ଓଡ଼ିଶା କି ଲୋକ କଥାଏଁ (ପ୍ରବୀଣ ପ୍ରକାଶନ, ମହରୌଲୀ, ନୂଆଦିଲ୍ଲୀ ପକ୍ଷରୁ ପ୍ରକାଶିତ)

**ହିନ୍ଦୀ ଭାଷାରେ: ଉପନ୍ୟାସ**

(୧) ଦେଶ କାଳ ପାତ୍ର (୨୦୦୫)

**ହିନ୍ଦୀ ଭାଷାରେ: ନାଟକ**

(୧) ସୂର୍ଯ୍ୟାସ୍ତ (୧୯୭୬), (୨) ସବସେ ନିଚେ କା ଆଦମୀ (୧୯୮୧), (୩) ଏକ ଦୁସରେ କେ ଲିୟେ (୧୯୮୬), (୪) ଅସଂଗତ ନାଟକ (୧୯୯୧), (୫) ସୁନ୍ଦର ଦାସ (୧୯୯୫)

**ହିନ୍ଦୀ ଭାଷାରେ: ସଂକଳନ**

(୧) ଜଗନ୍ନାଥ ପ୍ରସାଦ ଦାସ ସଂଚୟନ (୨୦୧୪)

**ଇଂରାଜୀ ଭାଷାରେ : କବିତା**

(1) First Person (1976), (2) Love is a Season (1978), (3) Timescapes (1980),

(4) Silences (1989), (5) Diurnal Rites and Other Poems (1994), (6) The Unreal City and Other Poems (1997), (7) Lovelines (2001), (8) Alimalika (2004), (9) Dark Times (2004), (10) Poems (2004), (11) Castout (2008)

**ଇଂରାଜୀ ଭାଷାରେ : ଗଳ୍ପ**

(1) The Magic Deer (1983), (2) The Forbidden Street (1988), (3) Spider's Web (1983) (4) The Prostitute (1995), (5) The Pukka Sahib (2001), (6) JP Das Stories (2003), (7) Dear Jester (2004), (8) The Will and Other Stories (2007)

**ଇଂରାଜୀ ଭାଷାରେ : ନାଟକ**

(1) Before the Sunset (1978), (2) Two Plays (1983), (3) The Underdog (1984),

(4) Absured Play (1989), (5) Sundar Das (2002), (6 ) Miss X (2002)

**ଇଂରାଜୀ ଭାଷାରେ : ଉପନ୍ୟାସ**

(1) A Time Elsewhere (2009)

## ଇଂରାଜୀ ଭାଷାରେ : ଶିଶୁ ସାହିତ୍ୟ

(1) Nanasense (2014)

## ଇଂରାଜୀ ଭାଷାରେ : ସଂକଳନ

(1) Reflection on Literature and Culture (2009), (2) JP Das Omnibus (2012),

(3) Complete Plays (2012), (4) Selected Short Stories (2013), (5) Selcted Poems (2014),

## ଉର୍ଦ୍ଦୁ, ଆସାମୀୟା, ବଙ୍ଗଳା ଓ ତେଲୁଗୁ ଭାଷାରେ : କବିତା

(୧) ପରଛାଇୟୌଁ କା ଜୁଲୁସ୍ (ଉର୍ଦ୍ଦୁ)(୧୯୭୯), (୨) ଆହ୍ନିକ୍ (ବଙ୍ଗଳା) (୧୯୯୫), (୩) ଆହ୍ନିକ (ଆସାମୀୟା) (୨୦୦୧), (୪) ଆହ୍ନିକମ୍ (ତେଲୁଗୁ) (୨୦୦୭)

## ପଞ୍ଜାବୀ ଓ କନ୍ନଡ ଭାଷାରେ : ନାଟକ

(୧) ଆଥାନ୍ ଭେଲେ (ପଞ୍ଜାବୀ / ୧୯୭୯), (୨) ହୋଢ୍ଗୁ ମୁଲଗଣ୍ଡ୍ୱା ମୁନ୍ନା (କନ୍ନଡ଼ / ୧୯୭୯)

# ଜେପିଙ୍କ ସଂପର୍କରେ ଲେଖା ଯାଇଥିବା ଗ୍ରନ୍ଥ:

(୧) Words on Canvas (Ed: Ganeswar Mishra / 2005), (୨) A leaf in the Stream (Autobiography of Sridhar Das, Trd. Mary Mohanty / 2006), (୩) ଜଗନ୍ନାଥ ପ୍ରସାଦ : ସୃଜନ ଯାତ୍ରା (ଲେଖକ : ଗଣେଶ୍ୱର ମିଶ୍ର / ୨୦୧୦), (୪) ପ୍ରିୟ ଜେପି (ସଂପାଦନା : ସୁମନ୍ୟୁ ଶତପଥୀ / ୨୦୧୧), (୫) ଜଗନ୍ନାଥ ପ୍ରସାଦ : ବନ୍ଧୁତାର ଆସର (ସଂ: ଗଣେଶ୍ୱର ମିଶ୍ର / ୨୦୧୩), (୬) ବହୁଧା (ମୂଳଲେଖା : ସୁମନ୍ୟୁ ଶତପଥୀ / ଓଡ଼ିଆ ଅନୁବାଦ : ପଞ୍ଚାନନ ମିଶ୍ର / ୨୦୧୪), (୭) ଭାରତୀୟତାର ଅନ୍ୱେଷୀ: ଜଗନ୍ନାଥ ପ୍ରସାଦ ଦାସ (ମୂଳ ଲେଖା: ଗଂଗା ପ୍ରସାଦ ବିମଲ / ଓଡ଼ିଆ ଅନୁବାଦ: ଡକ୍ଟର ରବିନାରାୟଣ ମହାରଣା / ୨୦୧୪), (୮) ସୁଅ ମୁହଁର ପତର (ଲେଖକ : ଶ୍ରୀଧର ଦାସ / ୧୯୮୨ ଓ ୨୦୧୪), (୯) ମୁଖଶାଳା (ସଂକଳକ ଓ ଅନୁବାଦକ: ଡକ୍ଟର ରବିନାରାୟଣ ମହାରଣା / ୨୦୧୫), (୧୦) J.P. Das, A Creative Journey (By: Ganeswar Mishra / Translated by Bikram Das / 2015), (୧୧) ଜେପି ଜୀବନୀ (ଲେଖକ : ଡକ୍ଟର ରବିନାରାୟଣ ମହାରଣା / ୨୦୧୯)

# ଜେପିଙ୍କ ସଂପର୍କରେ
# ପ୍ରକାଶ ପାଇଥିବା ପତ୍ର-ପତ୍ରିକା

(୧) Hindustan Standard / Dt. 05.05.1966,(୨) Screen (ଇଂରାଜୀ ସିନେ ପତ୍ରିକା / ୧୭-୧୦-୧୯୬୯),(୩) Hindustan Standard (Calcutta Edition / Dtd. 28.02.1972),(୪) National Herald, New Delhi (Dt. 03-11-1978), (୫)The Times of India / Delhi Diary (Dt. 02-01-1984), (୬) ସମାଜ (ତା: ୦୪.୦୧.୧୯୮୪),(୭) ଝଂକାର (ଡିସେମ୍ବର, ୧୯୮୨ ଓ ଡିସେମ୍ବର, ୧୯୮୫), (୮) ପ୍ରଗତିବାଦୀ (ତା:୦୩-୦୧-୧୯୯୩), (୯) ସୃଜନୀ (ଏକାଦଶ ବର୍ଷ / ପ୍ରଥମ ସଂଖ୍ୟା: ୨୦୧୪-୨୦୧୫)

# ଜେପିଙ୍କ ସଂପର୍କରେ କରାଯାଇଥିବା ଅନ୍ୟାନ୍ୟ କାର୍ଯ୍ୟ

(୧) ଜଗନ୍ନାଥ ପ୍ରସାଦ ରଚନା ସଂଗ୍ରହ

(ଇଲେକ୍‌ଟ୍ରୋନିକ ସଂକଳନ: ସୃଜନିକା / ୨୦୧୫)

(୨) ଡକୁମେଣ୍ଟାରୀ ଫିଲ୍ମ

(କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରସ୍ତୁତ / ଅବଧି: ୩୦ ମିନିଟ)

# ସେମାନଙ୍କ ଦୃଷ୍ଟିରେ ଜେପିଙ୍କ ବ୍ୟକ୍ତିତ୍ୱ

- **ଶ୍ରୀଧର ଦାସ :** ଜଗନ୍ନାଥଙ୍କ ପ୍ରସାଦରୁ ପାଇଥିବାରୁ ତାହାର ନାମ ଦେଇଥିଲି ଜଗନ୍ନାଥ ପ୍ରସାଦ। ପ୍ରାୟ ଚାରି ବର୍ଷ ବେଳକୁ ସେ ଶିକ୍ଷା ଆରମ୍ଭ କରିଥିଲା ବୋଲି କୁହାଯାଇପାରେ। ବିଧିବଦ୍ଧ ଶିକ୍ଷା ନଥିଲେ ହେଁ ସେ ଅନେକ ବିଷୟ ଜାଣି ପରିଥିଲା। ସାଧାରଣ ପିଲାଙ୍କ ଅପେକ୍ଷା ତା'ର ବୁଦ୍ଧି ପ୍ରଖର ଥିଲା ଓ ସ୍ମରଣ ଶକ୍ତି ପ୍ରବଳ ଥିଲା।

- **ଗଣେଶ୍ୱର ମିଶ୍ର :** ୧୯୮୪ରେ ଜଗନ୍ନାଥ ପ୍ରସାଦ ଭାରତୀୟ ପ୍ରଶାସନ ସେବା (ଆଇ.ଏ.ଏସ.)ରୁ ସ୍ୱେଚ୍ଛାରେ ଅବ୍ୟାହତି ନେଇ ନିଜର ସମସ୍ତ ସମୟ ଓ ଶକ୍ତି ସାହିତ୍ୟ, କଳା ତଥା ସାଂସ୍କୃତିକ କାର୍ଯ୍ୟରେ ନିୟୋଜିତ କରି ଆସିଛନ୍ତି। କ୍ୱଚିତ ବ୍ୟକ୍ତି ଏଭଳି କରି ପାରିଛନ୍ତି ବୋଲି ମନେହୁଏ।

- **ମୁରଲୀଧର ଶତପଥୀ :** ଥରେ ଆମ ଶ୍ରେଣୀର ହାତଲେଖା ପତ୍ରିକାରେ ପଣ୍ଡିତ ମଦନ ମୋହନ ମାଲବ୍ୟଙ୍କର ଗୋଟିଏ ସୁନ୍ଦର ଚିତ୍ର ଜଗନ୍ନାଥ ଆଙ୍କିଥିଲା। ପେନସିଲରେ ଅଙ୍କା ହୋଇଥିବା ସେ ଚିତ୍ରଟି ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ। କ୍ଲାସରେ ପ୍ରଥମ ହେବା ସହିତ ଛୋଟ କବିତା ଲେଖିବା ଓ ପେନସିଲରେ ଛୋଟ ଛୋଟ ଚିତ୍ର ଆଙ୍କିବା ଜଗନ୍ନାଥର ପିଲାଦିନରୁ ହିଁ ସଉକ ଥିଲା।

- **ପଠାଣି ପଟ୍ଟନାୟକ :** ଜଗନ୍ନାଥ ଜଣେ ପ୍ରଥମ ଶ୍ରେଣୀର ଛାତ୍ର ଥିଲେ ଏବଂ ଛାତ୍ର ବୟସରେ ଭଲ କବିତା ଲେଖୁଥିଲେ।

- **ଗୋପାଳ ମିଶ୍ର :** ଜେ.ପି. କେବଳ ଜଣେ କବି, କଥାକାର, ଚିତ୍ରଶିଳ୍ପୀ, କଳାକାର, ନାଟ୍ୟକାର ବା ଗବେଷକ ନୁହନ୍ତି। ତାଙ୍କ ସହିତ ବସି ଆଳାପ ଆଲୋଚନା କଲାବେଳେ ତାଙ୍କର ବହୁମୁଖୀ ପ୍ରତିଭା କେବେହେଲେ ସେ କହା ଆଗରେ ଧରା ପକାଇବାକୁ ଦିଅନ୍ତି ନାହିଁ। ସତେ ଯେପରି ସେ ଯେ କୌଣସି ସାଧାରଣ ମଣିଷଟିଏ।

- **ଅନନ୍ତ ମହାପାତ୍ର :** ୧୯୭୧ ହେବ ବୋଧେ। ଦିନେ ଗୋଟିଏ କବିତା ସନ୍ଧ୍ୟାରେ ମୁଁ ଜେପିଙ୍କୁ ପ୍ରସ୍ତାବ ଦେଲି ଯେ, ତାଙ୍କର କବିତା ସଂକଳନଟିଏ ଛପା ହେବା ନିହାତି ଦରକାର। .... ଯେତେବେଳେ ବହିଟି ପ୍ରକାଶିତ ହେଲା, ଅନେକ ବିଶ୍ୱାସ କରି ପାରି ନଥିଲେ ଯେ ସତରେ ସତ୍ୟଜିତ ରାୟ ପ୍ରଚ୍ଛଦ ଆଙ୍କିଥିବେ ବୋଲି ଏବଂ ଅଭିନେତା ଅନନ୍ତ ମହାପାତ୍ର ପ୍ରକୃତରେ ତା'ର ପ୍ରକାଶକ। .............. ମୋ ପାଇଁ ତାହା ଥିଲା ପ୍ରଥମ ଓ ଶେଷ ବହି। ଆଉ କାହାର ବହି ମୁଁ ପ୍ରକାଶ କରିନାହିଁ। ଜେପିଙ୍କର ବି ତାହା ଥିଲା ପ୍ରଥମ ବହି- ପ୍ରଥମ ପୁରୁଷ - କିନ୍ତୁ ଶେଷ ନୁହେଁ।

- **ବ୍ରଜନାଥ ରଥ :** ବନ୍ଧୁ ଜେ.ପି. ଭାରତୀୟ ପ୍ରଶାସନିକ ସେବାରେ ଜଣେ କର୍ତ୍ତବ୍ୟରତ ଅଫିସର ଥାଇ ମଧ୍ୟ ଅତି ସାହସର ସହିତ ବାଲିଆପାଳ କବିତା ଲେଖି ପାରିଥିଲେ ନିଜ ବିବେକ ଓ ହୃଦୟର ଆହ୍ୱାନରେ। ଛାତ୍ରାବସ୍ଥାରେ ତାଙ୍କ ଭିତରେ ଥିବା ବାମପନ୍ଥୀ ଚେତନା ଓ ସ୍ୱାଧୀନ ମନୋବୃତ୍ତିର ପରିଚୟ ମୁଁ ପୁଣି ପାଇ ପାରିଥିଲି ଏହି କବିତାରୁ।

- **ବିଜୟାନନ୍ଦ ସିଂହ :** ଜଗନ୍ନାଥ ପ୍ରସାଦଙ୍କ ହୃଦୟର ପ୍ରତିଫଳନ ସାରସ୍ୱତ ରଚନାରେ ଘଟିଛି। ଜଗନ୍ନାଥ ପ୍ରସାଦଙ୍କ ସୌନ୍ଦର୍ଯ୍ୟ ଚେତନା ଓ କଳାତ୍ମକ ଦୃଷ୍ଟିଭଙ୍ଗୀ ସତରେ ବିଚିତ୍ର। ସାହିତ୍ୟ ରଚନା ତାଙ୍କର ବିଳାସ ନୁହେଁ, ବରଂ ପ୍ରବୃତ୍ତି, ଚିନ୍ତା ଓ ଭାବନାର ପୂର୍ଣ୍ଣାଙ୍ଗ ମାନଚିତ୍ର।

- **ଓମ୍ ପ୍ରସାଦ ଅଗ୍ରୱାଲ :** ଜଗନ୍ନାଥ ବାବୁ ପିଲାବେଳେ ମାତ୍ର ୧୨ ବର୍ଷ ବୟସରେ ବାଣପୁରଠାରେ ତାଙ୍କ ସହପାଠୀ ହରିହର ରାମଙ୍କ ସହ ମିଶି ନେହେରୁ ସେବା ସଂଘ ଗଠନ କରିଥିଲେ ଏବଂ ଗାଁ ସଫେଇଠାରୁ ଆରମ୍ଭ କରି ମୁଷ୍ଟି ଭିକ୍ଷା କରି ଦୀନ ଦରିଦ୍ର ମଣିଷର ସେବାରେ ନିଜକୁ ହଜାଇ

ଦେଇଥିଲେ। ଏହା ହିଁ ତାଙ୍କୁ ପରବର୍ତ୍ତୀ ସମୟରେ ସରକାରୀ ଉଚ୍ଚ ପଦବୀ ସତ୍ତ୍ୱେ ଗରିବ ମଣିଷର ସାଥୀ ହେବାକୁ ପ୍ରୋତ୍ସାହିତ କରିଥିଲା।

■ **ରାସ ବିହାରୀ ବେହେରା :** ଜିଲ୍ଲାପାଳ ଦାୟିତ୍ୱରେ ରହି ବହୁ ବ୍ୟସ୍ତତା ଭିତରେ ମଧ୍ୟ ଖେଳ ପ୍ରତି ତାଙ୍କର ପ୍ରଗାଢ଼ ଆଗ୍ରହ ଥିଲା। ଟେନିସ ଖେଳ ପ୍ରତି ଆଗ୍ରହ  ଅତ୍ୟଧିକ। ସେ ମଧ୍ୟ ଜଣେ ଉତ୍ତମ ଟେନିସ ଖେଳାଳୀ।

■ **ସୁମନ୍ୟୁ ଶତପଥୀ :** ତ୍ରିବିଧ ନୀତି ଉପରେ ପର୍ଯ୍ୟବସିତ ତାଙ୍କ ସଫଳତାର ମନ୍ତ୍ର : ନିରବଚ୍ଛିନ୍ନ ସାଧନା, ସିଦ୍ଧିପ୍ରାପ୍ତି ପାଇଁ ତନ୍ମୟତା ଓ ଅଖଣ୍ଡ ନିଷ୍ଠା। ହୁଏତ ସେ ପ୍ରତିଟି କ୍ଷେତ୍ରରେ ସଫଳତାର ସର୍ବୋଚ୍ଚ ଶିଡ଼ିରେ ପହଞ୍ଚି ପାରି ନଥାନ୍ତି, ମାତ୍ର ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ପାଇଁ ତାଙ୍କର ରହିଛି ଅନବରତ ଉଦ୍ୟମ ଓ ନିରବଚ୍ଛିନ୍ନ ସାରସ୍ୱତ ସାଧନା।

■ **ଦ୍ୱିଜବର କାନୁନଗୋ :** ... ପ୍ରକୃତରେ ଦେଖିବାକୁ ଗଲେ ଜେ.ପି. ଦାସ ହେଉଛନ୍ତି ଏକ ବ୍ରିଲିଆଣ୍ଟ ଅଫିସର।

■ **Subodh Sarkar :** One thing about JP Da I immensely like is his multilingual mind that has made him popular with non-oriya poets and readers in India. He is fluent in four languages- Oriya, English, Bengali and Hindi.

■ **A.B. Lal :** Jagannath Prasad Das is not merely a good student. I can testify to the exellence of his moral character. He is a very fine and and cultured young man. His manners are very pleasing. he is honest and and straight forward.

■ **B. C. Rastogi :** He occasionally felt nervous due to presence of some of his friends in his class, whom he often cajoled to bunk.

■ **Balbir Mathur :** JP was studious. He sat in the front of the class. He was a quite person with soft voice. I do not see in him a writer or a poet of international fame or a literary icon. I see a friend for whom I have great affection.

■ **P.C. Hota :** On holidays and Sundays, he used to read for aboutfour hours for his preparation for the IAS. I hardly saw

him reading at night. Invariably, he used to go out with friends in the evening and return to the hostel for dinner and a good night's sleep.

- **Madhu Kiswar :** JP also left a deep imprint in Orissa because of his uprightness and exceptional integrity as a bureaucrat. He is quintessentially an Oriya but his artistic and moral sensibilities encompass for whole of India while he is at the same time a true citizen of the world.
- **Himadri Banerjee :** JP Da is a man who sincerely tries to see the best in others.
- **Paul St-Pierre :** Always of good counsel, JP never hesitates to speak his mind or take a principled stand.
- **Nirmalkanti Bhattacharjee :** JP Da gets irritated if prople come late or leave early. He is punctual to a fault.
- **Jaya Bachchan :** I am here because of you. Because you are a good person, a good human being: outspoken, simple and clean. I understand that language better than any other language. And you will always be my friend.
- **Mona Das :** My father was like a friend to me when I was growing up. He always treated me like an equal even when I was very young. He would talk to me about every thing very freely and openly.

# ସେମାନଙ୍କ ଦୃଷ୍ଟିରେ ଜେପିଙ୍କ ସୃଷ୍ଟି

- **ରମାକାନ୍ତ ରଥ :** ତଥାପି ଏଥିରେ କୌଣସି ସନ୍ଦେହ ନାହିଁ ଯେ, ଜଗନ୍ନାଥ ପ୍ରସାଦଙ୍କ ନିକଟରେ ଆତ୍ମାଭିବ୍ୟକ୍ତି ପାଇଁ କବିତା ଏକ ମହତ୍ତ୍ୱପୂର୍ଣ୍ଣ ସାଧନ ହୋଇ ରହିଛି ।

- **ସୀତାକାନ୍ତ ମହାପାତ୍ର :** ଜଗନ୍ନାଥ ପ୍ରସାଦ ଦାସ ଓଡ଼ିଆ କବିତାରେ ଏକ ସ୍ମରଣୀୟ ନାମ, ଯାହାଙ୍କ କବିତାରେ ଆବେଗମୟ ବ୍ୟକ୍ତି ସର୍ବସ୍ୱ ଅନୁଭବ ଧୀରେ ଧୀରେ ସାମୂହିକ ଭାଗ୍ୟ ସହିତ ଅଧିକରୁ ଅଧିକ ଭାବରେ ଏକାତ୍ମ ହୋଇ ଉଠିଥାଏ ।

- **ଗିରିବାଳା ମହାନ୍ତି :** ଜଗନ୍ନାଥ ପ୍ରସାଦ ଦାସଙ୍କର କବିତା ସାଂପ୍ରତିକ ଯୁଗର ସର୍ବବିଧ ଲକ୍ଷଣକୁ ବହନ କରେ । ତାଙ୍କ କବିତାର ବ୍ୟକ୍ତିନିଷ୍ଠତା, ଆତ୍ମମଗ୍ନତା, ଅନ୍ତର୍ମନନତା ଅଧିକ, ଏବଂ ତାହାରି ମଧ୍ୟରେ ମଧ୍ୟ ବିଶ୍ୱମନସ୍କତାର ଆଦୌ ଅଭାବ ରହିନାହିଁ ।

- **ଡକ୍ଟର ଦାଶରଥି ଦାସ :** ଜଗନ୍ନାଥ ପ୍ରସାଦ ମୁଖ୍ୟତଃ ନଗରଜୀବନର ଶିଳ୍ପୀ । ଗାଁ ଭୂଇଁ ତାଙ୍କର ଉପାଦାନ ନୁହେଁ । ତେବେ ଦ୍ୱୀପ, ସଂପର୍କ ଓ ଲୋକସଂସ୍କୃତି ଗଳ୍ପରେ ସେ ଗାଁକୁ ଯାଇଛନ୍ତି । ଏସବୁ କ୍ଷେତ୍ରରେ ତାଙ୍କର ବର୍ତ୍ତମାନ ବିମୁଖ ସ୍ମୃତି ନିର୍ଭର ଅତୀତଚାରିତା (Nostalgia) ବାରି ହୋଇଯାଏ । ଦରିଦ୍ରକାତର ଗାଁ ଭୂଇଁର ଅଦମ୍ୟ ଜିଦୀବିଷାକୁ ସେ ଶ୍ରଦ୍ଧା ଓ ସମ୍ମାନ କରନ୍ତି ।

- **ଡକ୍ଟର ଖଗେଶ୍ୱର ମହାପାତ୍ର :** ଭାରତୀୟ ପ୍ରଶାସନ ସେବାରୁ ସ୍ୱେଚ୍ଛାକୃତ ଅବସର ନେଇ ଗବେଷଣା, ସାହିତ୍ୟ ସର୍ଜନା ଓ ସାଂସ୍କୃତିକ କାର୍ଯ୍ୟକ୍ରମରେ ସେ ବୋଧହୁଏ ପ୍ରଶାସନଠାରୁ ଅଧିକ ମର୍ଯ୍ୟାଦା ସାହିତ୍ୟ-ସଂସ୍କୃତିକ-ବୌଦ୍ଧିକ ସ୍ତରରେ ଲାଭକରି ନିଜର କଳାନୁଗତ ଜୀବନକୁ ସାର୍ଥକ କରିଛନ୍ତି।

- **ଗଙ୍ଗା ପ୍ରସାଦ ବିମଲ :** ଜଗନ୍ନାଥ ପ୍ରସାଦ କେବଳ ଶବ୍ଦର ଜାଦୁଗର ନୁହନ୍ତି, ଅଧିକନ୍ତୁ ଶବ୍ଦର ସମସ୍ତ ଚିତ୍ରକୁ ଚିତ୍ରଣ କରିପାରୁଥିବା ଏକ ସଫଳ କଳାକାର ମଧ୍ୟ।

- **ସଇଦ ସହେରୱ୍ୱର୍ଦୀ :** ଜେ.ପି. ଦାସ ନାମରେ ସୁପରିଚିତ ଜଗନ୍ନାଥ ପ୍ରସାଦ ଦାସ ସେହି ଭାଗ୍ୟବାନ ପ୍ରଶାସକମାନଙ୍କ ମଧ୍ୟରେ ଅନ୍ୟତମ ଯିଏ କି ନିଜର ଯାତନାନୁଭବକୁ ଫାଇଲଗଦା ମଧ୍ୟରେ ହଜାଇ ଦେଇ ନାହାନ୍ତି, ବରଂ ନିଜର ସେହି ଯନ୍ତ୍ରଣାକୁ ସାମୂହିକ ସ୍ତରକୁ ଉନ୍ନତ କରାଇବା ବେଳେ ତାହାକୁ ନିଜର କବିତାପାଇଁ ଖୋରାକ ଭାବେ ସାଉଁଟି ରଖିଛନ୍ତି।

# ସରସ୍ୱତୀ ସମ୍ମାନ ପ୍ରାପ୍ତିର ପ୍ରତ୍ୟୁତ୍ତରରେ ଜେପିଙ୍କ ଅଭିଭାଷଣ

ଆପଣମାନଙ୍କ ସହିତ ଆଜି ଏଠାରେ ଉପସ୍ଥିତ ରହିଥିବାରୁ ମୋତେ ବହୁତ ଖୁସି ଲାଗୁଛି। ଆପଣଙ୍କ ଉପସ୍ଥିତିରେ ହିଁ ମୁଁ ସମ୍ମାନିତ ହୋଇଅଛି। ଲେଖକ ଓ ପାଠକଙ୍କ ଦେଖା ସାକ୍ଷାତ ବହୁତ କମ୍ ହୋଇଥାଏ ଏବଂ ସେହି ସୁଯୋଗକୁ ଆଣି ପାରିଥିବା ଯେ କୌଣସି ସୁଯୋଗ ନିଶ୍ଚିତ ଭାବରେ ସ୍ୱାଗତଯୋଗ୍ୟ।

ନିଜ କୃତିକୁ ନେଇ ପାଠକ ଓ ସମୀକ୍ଷକଙ୍କ ଉଦାସୀନତା ସଂପର୍କରେ ଅନେକ ଲେଖକଙ୍କର ଅଭିଯୋଗ ରହିଥାଏ। ମୋର ନିଜସ୍ୱ ଅନୁଭବ କିନ୍ତୁ ଦେଖିବାକୁ ଗଲେ, ସାମାନ୍ୟ ଭିନ୍ନ। ପାଠକମାନେ, ବଂଧୁମାନେ ଏବଂ ପରିଚିତମାନେ- ଏପରିକି ଅପରିଚିତମାନେ ମଧ୍ୟ ମୋ ଉପରେ ସବୁବେଳେ କୃପା ଓ ସ୍ନେହ, ଏତେ ପରିମାଣରେ ଅଜାଡି ଦେଇଛନ୍ତି ଯେ ବେଳେବେଳେ ଲାଗେ ସତରେ କଣ ମୁଁ ଏସବୁର ଯୋଗ୍ୟ ? ମୁଁ ଯାହା କିଛି ଅଳ୍ପ ବହୁତ ଲେଖିଛି, ପ୍ରତିବଦଳରେ ଲୋକମାନଙ୍କଠାରୁ ତାହାଠାରୁ ଯଥେଷ୍ଟ କିଛି ପାଇଛି। କେତେଥର ତ ମନେ ହୋଇଛି ଯେ, ଲୋକମାନେ ସ୍ୱେଚ୍ଛାରେ ମୋତେ ଯାହାସବୁ ପ୍ରଦାନ କରିଛନ୍ତି, ତାହାର ଯୋଗ୍ୟ ହେବା ପାଇଁ ମୋର ଆହୁରି ବହୁତ କିଛି କରିବା ଦରକାର ଥିଲା। ଏହିଭଳି ଅବସରରେ କିଛି ଅପେକ୍ଷା ରଖା ଯାଇଥାଏ ଯେ ଲେଖକ ସାହିତ୍ୟ ସମ୍ବନ୍ଧରେ କିଛି କହିବେ ଏବଂ ନିଜ ଯୋଗ୍ୟତା ଓ କାର୍ଯ୍ୟର ପରିଚୟ ପ୍ରଦାନ କରିବେ। ଦୁର୍ଭାଗ୍ୟକ୍ରମେ ମୁଁ କିଛି

ଅଳ୍ପ-ବହୁତ ସାହିତ୍ୟ ରଚନା କରିଛି, ତାହା ଛଡା କୌଣସି ପ୍ରକାରର ସାହିତ୍ୟିକ ସିଦ୍ଧାନ୍ତ ବା ଆଲୋଚନାରେ ମୋର କେବେହେଲେ କୌଣସି ପ୍ରକାରରେ ରୁଚି ରହିନାହିଁ। ମୋର ଯାହାକିଛି କହିବାର ଥିଲା ତାହାକୁ ମୁଁ ମୋ କବିତାରେ କହି ସାରିଛି। ମୋର ଆଉ ଅଧିକ ଭାଷଣ ଦେବାର ନାହିଁ କି କୌଣସି ସିଦ୍ଧାନ୍ତ ମଧ୍ୟ ଘୋଷଣା କରିବାର ନାହିଁ।

ହେଲେ, ଜଣେ ଲେଖକ ଭାବରେ ମୋର ଯେଉଁ ଦୁର୍ବଳତା ରହିଛି, ମୋତେ ଯେଉଁ ଆଶଙ୍କା ବାରମ୍ବାର ଯନ୍ତ୍ରଣା ଦେଉଛି ସେ ସଂପର୍କରେ ମୁଁ ହୁଏତ କିଛି କହିପାରେ। ମୁଁ ଅତ୍ୟନ୍ତ ଗମ୍ଭୀରତାର ସହିତ ଲେଖାଲେଖି କରିଛି, ହେଲେ ମୁଁ ଲେଖିବାପାଇଁ ନିଜର ସଂପୂର୍ଣ୍ଣ ଜୀବନ, ସମୟ ଏବଂ ସମର୍ପଣ ଦେଇ ପାରିନାହିଁ। ପୂର୍ଣ୍ଣକାଳୀକ, ବ୍ୟବସାୟିକ ଲେଖକମାନଙ୍କ ପାଇଁ ଏହା ସମ୍ଭବ, ମାତ୍ର ମୋ ପରି ସାମୟିକ ତଥା ରବିବାସରୀୟ ଲେଖକମାନେ ନ ଲେଖିବାପାଇଁ କୌଣସି ନା କୌଣସି ବାହାନା ଖୋଜୁଥାନ୍ତି, ଯେପରି ଆଜି ପାଗଟା ଭଲ ନାହିଁ, ଆଜି ମୋତେ ବିଲ୍ ପୈଠ କରିବା ପରି ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସଂପନ୍ନ କରିବାକୁ ଅଛି ବା ପୁଣି ଏହି ସବୁ କାରଣଗୁଡ଼ିକଠାରୁ ବଳି ଅତି ଖରାପ କାରଣର ସାହାଯ୍ୟ ନିଆଯାଇ କୁହା ଯାଏ ଯେ ଆଜି ମୋର ଲେଖିବା ପାଇଁ ମୁଡ୍ ନାହିଁ।

ଆହୁରି ଗୋଟିଏ ଶଂକା ମୋ ମନକୁ ବାରମ୍ବାର ବ୍ୟସ୍ତ କରୁଛି ଯେ ମୋ ଲେଖାକୁ କଣ କିଏ ପଢୁଛି ? ଲେଖିବାର ଉଦ୍ଦେଶ୍ୟ କଣ ? ଓଡ଼ିଆ ପୁସ୍ତକର ପାଠକବର୍ଗତ ବହୁତ ସ୍ୱଳ୍ପ। ହେଲେ ମୁଁ ନିଜେ ନିଜକୁ ବୁଝାଇ ନେଇଛି ଯେ, ପାଠକ ବର୍ଗ ଛୋଟ ହେଲେବି ଲେଖକ ପାଇଁ ନିଜ ମନର କଥା ନିଜସ୍ୱ ଭଙ୍ଗୀରେ କହିବାର ସ୍ୱାଧୀନତା ରହିଛି ଏବଂ ମୁଁ ଲେଖି ଚାଲିଛି।

ମୋ ମନରେ ଆହୁରି ଏକ ପ୍ରଶ୍ନ ଉଠୁଛି ଯେ, ଗୁଜରାଟରେ ଯାହା କିଛି ଘଟିଗଲା ତାହା ପରେ ମଧ୍ୟ କଣ କବିତା ଲେଖିବା ସମ୍ଭବ ? ଏହି ପ୍ରଶ୍ନକୁ ମୁଁ ନିଜସ୍ୱ ଢଂଗରେ ସମାଧାନ କରିଛି। ଗୁଜରାଟରେ ଯାହାକିଛି ଘଟିଗଲା ତାହାପରେ ଗୁଜୁରାଟ ଉପରେହିଁ

କବିତା ଲେଖିବା ସମ୍ଭବ ହେବ ଏବଂ ଏହାକୁ ଲେଖି ଆମେ ଏହି ସତ୍ୟକୁ ପ୍ରତିଷ୍ଠା କରି ପାରିବା ଯେ କବି ବାଲ୍ମୀକିଙ୍କ ମହାକାବ୍ୟର କଳ୍ପନା ବାହାରେ କେଉଁଠି ହେଲେ ବି ଅଯୋଧ୍ୟା ନାହିଁ।

ଅନେକ ଥର ମୁଁ ଏପରି ମଧ୍ୟ ଭାବେ ଯେ ସମାଜରେ କବିର ସ୍ଥାନ କେଉଁଠି ? ସମସ୍ତେ ପ୍ରାୟ ଚାହାନ୍ତି ଯେ ସାହିତ୍ୟିକ ତାଙ୍କ ସାହିତ୍ୟ ମାଧ୍ୟମରେ ସମାଜକୁ ପରିବର୍ତ୍ତନ କରନ୍ତୁ। ସମାଜର ଏହି ବୋଝ ଲେଖକଙ୍କ ପାଇଁ ବଡ଼ ଅସହ୍ୟ ହୋଇଉଠେ। ଦାରିଦ୍ର୍ୟ, ଶୋଷଣ, ଭ୍ରଷ୍ଟାଚାର, ଅନୁଶାସନହୀନତା, ରୋଗ, ଅସନ୍ତୁଷ୍ଟି, ହତ୍ୟା ଇତ୍ୟାଦି ଚାରିଆଡ଼େ ଆତଙ୍କ ଖେଳାଇ ଦେଇଛି ତ କବି ବିଚାରା କଣ କରି ପାରିବ ? ମୁଁ ନିଜ ତରଫରୁ ଏହି ପ୍ରଶ୍ନର ଉତ୍ତର ନିଷ୍କର୍ଷ କରି ସାରିଛି ଏବଂ ତାହା ହେଉଛି ଯେ, କବିଙ୍କୁ ତାହାହିଁ କରିବାକୁ ହେବ ଯାହାକୁ ସେ କରି ପାରିବ, କବିତା ଲେଖିବ। ଯାହା କିଛି ଘଟି ଯାଉଛି ସେ ସବୁକୁ ନେଇ କବି ନିଜ କବିତାରେ ସତ୍ୟକୁ ଚିତ୍ରଣ କରନ୍ତୁ ଏବଂ ସେହି ସତ୍ୟ ସାରା ପୃଥିବୀରେ ପହଁଞ୍ଚି ଯାଉ ଓ ପୃଥିବୀ ସେହି ସତ୍ୟକୁ ଖୋଲା ଆଖିରେ ଦେଖିବକୁ କ୍ଷମ ହେଉ। ଚେକଭ୍‌ଙ୍କ କହିବାନୁଯାୟୀ ସମସ୍ୟାର ସମାଧାନ କରିବା ଏବଂ ସମସ୍ୟାକୁ ଚିତ୍ରଣ କରିବା ଏହି ଦୁଇଟି କଥା ମଧ୍ୟରୁ ଦ୍ୱିତୀୟଟିହିଁ କଳାକାରର ଦାୟିତ୍ୱ।

ଭାରତୀୟ ଭାଷାମାନଙ୍କରେ ଲେଖୁଥିବା ଲେଖକମାନଙ୍କ ସମ୍ମୁଖରେ ଆହୁରି ଗୋଟିଏ ସମସ୍ୟା ରହିଛି। ଜଗତୀକରଣ ହେତୁ ଆମ ସମାଜରେ ଉପନିବେଶୀକରଣ କ୍ରମଶଃ ବୃଦ୍ଧି ପାଉଅଛି ଏବଂ ସମାଜ ଉପରେ ପ୍ରଭାବ ବିସ୍ତାର କରୁଥିବା ଇଂରାଜୀ ଭାଷା ହେତୁ ଆମ ଭାଷାମାନଙ୍କର ଅସ୍ତିତ୍ୱ ଉପରକୁ ବିପଦ ମାଡ଼ି ଆସୁଛି। ଆମେ ଆମର ଭାଷାମାନଙ୍କରେ ଲେଖିହିଁ ତାହାକୁ ବଞ୍ଚାଇ ରଖି ପାରିବା। ଏବଂ ଆମକୁ ଆମ ଭାଷାରେ ଭଲ ସାହିତ୍ୟ ନିର୍ମାଣ କରିବାକୁ ହେବ। ଏହି ଦିଗରେ ମୁଁ ନିଜେ ଯେତିକି କରି ପାରିବି ସେଥିପାଇଁ ନିଶ୍ଚୟ ଚେଷ୍ଟା କରିବି।

ହଁ, ଆପଣମାନଙ୍କ ସମ୍ମୁଖରେ ଆହୁରି ଗୋଟିଏ କଥା ସ୍ୱୀକାର କରିବାକୁ ଚାହୁଁଛି, ତାହା ହେଉଛି ଲେଖିବା ମୋ ପାଇଁ କେବେ

ସହଜସାଧ୍ୟ ହୋଇ ନାହିଁ। କେତେକ କବି କୁହନ୍ତି ଯେ କେଉଁ ଦୈବୀଶକ୍ତି ତାଙ୍କୁ କବିତା ବତାଇ ଦେଉଛନ୍ତି ଓ ସେ କେବଳ ତାହାକୁ କାଗଜ ଉପରେ ଉତାରି ପକାଉଛନ୍ତି। ମୁଁ କିନ୍ତୁ ଏତେ ଭାଗ୍ୟଶାଳୀ ନୁହେଁ। ଆଉ କେତେକ କୁହନ୍ତି ଯେ, କବିତା ତାଙ୍କ ପାଖକୁ ଆସେ। କବିତା କେଉଁଠାରୁ ଆସେ ତାହା ମତେ ଜଣା ଥିଲେ ମୁଁ ହୁଏତ ସେଠାକୁ ପଳାଇ ଯାଆନ୍ତି। ନିଜ ସଂପର୍କରେ ମୁଁ କହିବି ଯେ ଲେଖିବା ମୋ ପାଇଁ ସବୁଠୁ କଠିନ ଓ ଭାରାକ୍ରାନ୍ତ କର୍ମଟିଏ ମାତ୍ର। କୌଣସି କାମ ଶେଷ ହେଲା ପରେ ଯେଉଁ ସନ୍ତୋଷ ମୁଁ ଲାଭ କରେ ତାହା ଯଦି ମିଳୁ ନଥାନ୍ତା ତାହାହେଲେ ହୁଏତ ମୁଁ କିଛି ଲେଖନ୍ତି ନାହିଁ। ଲେଖିବା ହେଉଛି ସବୁଠାରୁ ବଳି ପରିଶ୍ରମର କାମ। ବୋଧହୁଏ ସେଥିପାଇଁ ମୁଁ ଯେତିକି ଲେଖିଛି ତାହାଠାରୁ ଅଧିକ ଲେଖି ପାରିନାହିଁ। ମୁଁ ନିଜକୁ ନିଜେ ପ୍ରବୋଧନା ଦେଇଥାଏ ଯେ, ଲେଖିବା ବ୍ୟତିରେକ ମୁଁ ନିଜ ଜୀବନରେ ପୂର୍ଣ୍ଣମାତ୍ରାରେ ବଞ୍ଚିବାର ପ୍ରୟାସ କରିଛି। ଯଦି ମୋତେ ଜଣା ଥାଆନ୍ତା ଯେ ମୋର ନ ଲେଖିବା ଫଳରେ ସାହିତ୍ୟର କ୍ଷତି ଘଟିବ ତାହାହେଲେ ହୁଏତ ମୁଁ ବାକି ସବୁକାମକୁ ଛାଡ଼ିଦେଇ ଆହୁରି ବେଶି ଲେଖିବାପାଇଁ ପ୍ରଯତ୍ନ କରନ୍ତି। ହେଲେ ମୋ ମନରେ କେବେହେଲେ ଏପରି ଭ୍ରାନ୍ତି ବା ମିଥ୍ୟା ଅହଂକାର ଜନ୍ମି ନାହିଁ।

ଆଜିର ଏହି କାର୍ଯ୍ୟକ୍ରମ ମୋର ସୀମା ଓ ଅପୂର୍ଣ୍ଣତାର ବିଶ୍ୱାସକୁ ପୁଣି ଥରେ ଉଦ୍ରେକ କରିଛି ଏବଂ ଏହି କାରଣରୁ ମୁଁ ଆହୁରି ଅଧିକ ବିନୀତ ଉପଲବ୍ଧ କରୁଛି। ଏହି ଅବସରରେ ମୋର ମନରେ ଇଚ୍ଛା ଜାଗ୍ରତ ହେଉଛି ଯେ ମୁଁ ଆହୁରି କିଛି ଲେଖିଥାନ୍ତି କି! ମନରେ ଉଙ୍କି ମାରୁଥିବା ସମସ୍ତ କଳ୍ପନାକୁ ଶବ୍ଦାବଦ୍ଧ କରିଥାନ୍ତି କି ଏବଂ ନିଜେ ଲେଖିଥିବା ଅଧା ଲେଖାଗୁଡ଼ିକ ପୂରା କରିଦିଅନ୍ତି କି! ତା' ସାଙ୍ଗକୁ ମଧ୍ୟ ମନେ ହେଉଛି ଯେ ଏହି ସବୁ କରିବା ପାଇଁ ମୋତେ ଆଉ ଟିକିଏ ବୟସ ମିଳି ଯାଆନ୍ତା କି!

ଯେଉଁ ପୁସ୍ତକକୁ ଆଜି ସମ୍ମାନ ମିଳୁଛି ତାହା ସଂପର୍କରେ ଆଜି ହୁଏତ ମୋତେ କିଛି କହିବାକୁ ହେବ। ତାହା ଯଦି କୌଣସି କଥା-କାହାଣୀର ପୁସ୍ତକ ହୋଇଥାନ୍ତା ତାହାହେଲେ ମୁଁ ଆପଣମାନଙ୍କୁ

ତାହାର କାହାଣୀ ସଂକ୍ଷେପରେ ଶୁଣାନ୍ତି। ହେଲେ କୌଣସି କବିତାର କଳ୍ପନାକୁ ସଂକ୍ଷେପରେ କହି ହେବ ନାହିଁ କି ତାହାକୁ ବୁଝାଇ ମଧ୍ୟ ହେବ ନାହିଁ। କବିତାରେ ଯେଉଁ ବିଷୟ କୁହାଯାଇଛି ତାହାର ଯେତିକି ମହତ୍ତ୍ୱ ରହିଛି, ତାହାକୁ କିପରି କୁହା ଯାଇଛି ତାହାର ମଧ୍ୟ ସେତିକି ମହତ୍ତ୍ୱ ରହିଛି। ମୁଁ କେବଳ ଏତିକି ମାତ୍ର କରି ପାରିବି ଯେ, ଏହି ସଂଗ୍ରହରୁ ଗୋଟିଏ କବିତାକୁ ପଢ଼ି ଶୁଣାଇ ଦେବି। ଆପଣମାନଙ୍କ ମଧ୍ୟରୁ କେହି ହୁଏତ ସମୟ ବାହାର କରି ପଢ଼ିବା ପାଇଁ କଷ୍ଟ କରିବେ ବୋଲି ମୁଁ ଆଶା କରୁଛି।

ଏହି କେତୋଟି ଶବ୍ଦ କହି ମୁଁ ପୂର୍ଣ୍ଣ ବିନମ୍ରତାର ସହିତ ସମ୍ମାନକୁ ସ୍ୱୀକାର କରୁଅଛି ଏବଂ ତାହାକୁ ମୋତେ କବିତା ଲେଖିବା ପାଇଁ ପ୍ରେରଣା ଯୋଗାଇ ଥିବା ସମସ୍ତ ପୂର୍ବଜ ଓଡ଼ିଆ କବିମାନଙ୍କୁ, ମୋତେ ଉତ୍ସାହ ଯୋଗାଇଥିବା ସମସ୍ତ ସମକାଳୀନ କବିମାନଙ୍କୁ ଏବଂ ଓଡ଼ିଆ କବିତାକୁ ନୂତନ ଦିଗରେ ଆଗେଇ ନେଇ ଶୀର୍ଷ ସ୍ଥାନରେ ପହଞ୍ଚାଇବାକୁ ପ୍ରସ୍ତୁତ ସମସ୍ତ ଯୁବ କବିମାନଙ୍କୁ ସମର୍ପିତ କରୁଅଛି।

ଧନ୍ୟବାଦ।

# କବିତାର ଅର୍ଥ

ଅନେକେ ପଚାରିଥାନ୍ତି
କବିତାର ଅର୍ଥ ଓ ଅଭିପ୍ରାୟ କଣ
ଏପରିକି ସେମାନେ ବି
ଯେଉଁମାନେ କବିତାର ଧାର ଧାରନ୍ତି ନାହିଁ
କିନ୍ତୁ କେହି ବି ପଚାରେ ନାହିଁ
ସମୟର ସଂଜ୍ଞା କଣ
ପ୍ରେମର ପରିଭାଷା କଣ
ଅଥବା ଜୀବନର ତାତ୍ପର୍ଯ୍ୟ କିପରି
କେବେ କିଏ କହିଥିଲା ଯେ
କେହି ବି କବିତା ପଢ଼ନ୍ତି ନାହିଁ
ନା ମାଛବାଲା ନା ମୁଖ୍ୟମନ୍ତ୍ରୀ
ନା ପ୍ରକାଶକ ନା ବି ଅଧ୍ୟାପକ
ଏ କଥା ବି ଜଣା ଯେ ସେମାନେ
ଇନ୍ଦ୍ରଧନୁ ପ୍ରଜାପତି ଘାସଫୁଲ
ଡାହାଣିଆ ଖରା ଫୁଲସଂଜ
ଦକ୍ଷିଣା ପବନ ଭିଜା ମାଟି
ଟୁପୁର ଟାପର କିଚିରି ମିଚିରି
ଏମାନଙ୍କ ବିଷୟରେ ବି ସଂପୂର୍ଣ୍ଣ ଉଦାସୀନ

ଏ କଥା ମଧ୍ୟ ସୁପ୍ରତୀତ ଯେ
କବିତା ବିପ୍ଳବ ଆଣେ ନାହିଁ
ଭୋକିଲା ମୁହଁରେ ଭାତ ଦିଏ ନାହିଁ
କବିତା ରୋକି ପାରେ ନାହିଁ ପୁଲିସର ଗୁଳି
ଏପରି କବିତା ନୀତିଶିକ୍ଷା ବି ଦିଏ ନାହିଁ
ତା ଯଦି ଲକ୍ଷ୍ୟ ହୋଇଥାନ୍ତା
କବି କଲମ ନୁହେଁ ବନ୍ଧୁକ ଧରି
ରାସ୍ତା ଉପରକୁ ଓହ୍ଲାଇ ଆସି
ହାତମୁଠା ଉଠାଇ ଚିତ୍କାର କରନ୍ତା
ଏବଂ କବିତା ନ ଲେଖି
ସେ ଲେଖିଥାନ୍ତା ନାରା ଓ ନୀତିକଥା

ପାଠକମାନେ ପ୍ରାୟଶଃ
କବିତା ପାଖକୁ ଯାଆନ୍ତି ନାହିଁ
ତଥାପି ତାକୁ ପଢ଼ନ୍ତି କିଛି ଚନ୍ଦ୍ରାହତ ଲୋକ
ପଢ଼ନ୍ତି ଓ କବି ସହିତ ମିଶି
ସେମାନେ ବି କବିତାକୁ ତିଆରି କରନ୍ତି
ଓ ତାକୁ ଜୀବନ୍ୟାସ ଦିଅନ୍ତି
କବିତା କେବଳ ସେଇମାନଙ୍କ ପାଇଁ
ଯେଉଁମାନେ ଥରେ ପଢ଼ି ସାରିବା ପରେ
ତାକୁ ହୃଦୟଙ୍ଗମ ନ କରିବା ସତ୍ତ୍ୱେ
ସ୍ପର୍ଦ୍ଧା ରଖନ୍ତି ଆଉଥରେ ପଢ଼ିବାର

କବିତାର ଉପଲବ୍ଧି ସେତିକି
ଯାହା ଆଖିକୁ ଲଂଘି
ଅର୍ଥ ଓ ଅନର୍ଥମାନଙ୍କୁ ଦେଇ
ସିଧା ଚାଲିଯାଏ ମନ ଗହନକୁ
ଯିଏ ତାକୁ ଯେତିକି ବୁଝେ
ବ୍ୟଂଜନା ଓ ଦୁର୍ବୋଧତା ମଝିରେ
କବିତାର ଯଥାର୍ଥତା ସେତିକି ମାତ୍ର
ତା ବାହାରେ ଆଉ କିଛି ନୁହେଁ

କବିତା କିଛି ପ୍ରେମ ଭଳି
କିଛି ବି ସମୟ ଭଳି
ନିଜ ଭିତରେ ସ୍ୱୟଂ ସଂପୂର୍ଣ୍ଣ
କାହାରିଠାରୁ କିଛି ମାଗେ ନାହିଁ
କୌଣସି ସଫଳତାର ଦାବି ନାହିଁ
ନିଜେ ନିଜର ସାଧନା ଓ ସିଦ୍ଧି
ନିଜେ ନିଜର ଆଧାର ଓ ଅବଧି
ନିଜେ ନିଜର ସମନ୍ୱୟ ଓ ସଂଗତି
କବି ସ୍ୱୟଂଭୁ ହୋଇ ତିଆରି କରେ
ନିଜେ ନିଜର ଅର୍ଥ ଓ ଦୁର୍ବୋଧତା

କବିତା ଥାଏ ଛନ୍ଦ ଅଳଙ୍କାର ବାହାରେ
କବିତା ଥାଏ ଉପମା ଅନୁପ୍ରାସ ଶ୍ଲେଷ
ବିମ୍ବ ରୂପକ ଚିତ୍ରକଳ୍ପରୁ ସ୍ୱତନ୍ତ୍ର
କବିତା ଥାଏ ବନାନ ବ୍ୟାକରଣ

ଓ ବିରାମ ଚିହ୍ନରୁ ଊର୍ଦ୍ଧ୍ୱ
ସମୀକ୍ଷକ ସମାଲୋଚକ ଅଧ୍ୟାପକ
ତାତ୍ତ୍ୱିକ ଟୀକାକାର ବ୍ୟାଖ୍ୟାତାଙ୍କ
ଅଧିକାର ଓ ଆଧିପତ୍ୟରୁ ବିମୁକ୍ତ
କବିତା ଥାଏ ନିଜର ସ୍ୱାୟତ୍ତ ସାମ୍ରାଜ୍ୟରେ
ନିଜେ ନିଜର ସାର୍ବଭୌମ ସମ୍ରାଟ ହୋଇ
କବିତା ପାଖକୁ ଟାଣି ନିଏ
ବୁଝିବା ନ ବୁଝିବା ନିର୍ବିଶେଷ
କବିତା ପ୍ରଲୋଭିତ କରେ
ଦୁର୍ବିନୀତ ଶବ୍ଦମାନଙ୍କ ପାଖରେ
ବିନା ସର୍ତ୍ତ ଆତ୍ମସମର୍ପଣର
କବିତା ବାରମ୍ବାର ବାଧ୍ୟକରେ
ଅବାକ ଆଖିକୁ ଆହୁରି ଥରେ
ପଛ ଧାଡ଼ିକୁ ଫେରିଯିବା ପାଇଁ

କେହି ସଚରାଚର କବିତା ପଢ଼ନ୍ତି ନାହିଁ
ଏପରିକି ସେ ବି ପଢ଼େ ନାହିଁ
ଯାହାପାଇଁ କବିତାଟି ଲେଖା ହୋଇଥିଲା
ଏଥିରୁ ହୁଏତ ନିଷ୍କର୍ଷ ବାହାରିବ
ଯେ କବିତା ତା ହେଲେ କିଛି ବି ନୁହେଁ
ଏବଂ ଜୀବନ ପାଇଁ
ସଂପୂର୍ଣ୍ଣ ଅବାନ୍ତର କବିତା
ସେପରି ଭାବେ ଦେଖିବାକୁ ଗଲେ
ଜୀବନ ବି ତ ଆଉ କିଛି ନୁହେଁ
କେଉଁ ଅଜଣା କବିତାର ବୁଝି ହେଉ ନ ଥିବା
କେତୋଟି ଅର୍ଥହୀନ ପଂକ୍ତି ବ୍ୟତୀତ



ଓଡ଼ିଆ ସାରସ୍ୱତ ପରିମଣ୍ଡଳରେ ଏକ ଜଣାଶୁଣା ନାଁ **ଡକ୍ଟର ରବିନାରାୟଣ ମହାରଣା** । ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ଅନେକ କବିତା, ଗଳ୍ପ, ଅନୁବାଦ, ପ୍ରବନ୍ଧ ଓ ସମାଲୋଚନାତ୍ମକ ସୃଷ୍ଟି ପ୍ରକାଶିତ ହୋଇ ପାଠକୀୟ ଶ୍ରଦ୍ଧା ଲାଭ କରିଛି । ୨୦୦୨ ମସିହାରେ 'ଶୁଦ୍ଧ ଓଡ଼ିଆ ଲିଖନ ପ୍ରବିଧି' ମାଧ୍ୟମରେ ନିବନ୍ଧକ ଭାବେ ସାହିତ୍ୟ ଜଗତକୁ ପ୍ରବେଶ କରିଥିବା ରବିନାରାୟଣଙ୍କର ଏଯାଏଁ ଚବିଶ ଖଣ୍ଡ ପୁସ୍ତକ ପ୍ରକାଶିତ ହୋଇ ସାରିଛି । ସେହାରି ଭିତରେ ରହିଛି; ଜୀବନୀକାର ଓ ଔପନ୍ୟାସିକ ଗୋପୀନାଥ ମହାନ୍ତି, ଓଡ଼ିଆ ଭାଷାର ପ୍ରୟୋଗିକ ରୂପରେଖ, ଅଧ୍ୟାପକ ଶ୍ରୀଧର ଦାସ, ଭାରତୀୟତାର ଅନ୍ୱେଷୀ ଜଗନ୍ନାଥ ପ୍ରସାଦ ଦାସ, ହିନ୍ଦୀ ବ୍ୟାକରଣ ଭଳି ଅନେକ ପୁସ୍ତକ । ଓଡ଼ିଆ ଭାଷା ସର୍ବଭାରତୀୟ ସ୍ତରରେ ଶାସ୍ତ୍ରୀୟ ମର୍ଯ୍ୟାଦା ଲାଭ କଲା ପରେ ଏହାର ପ୍ରଚାର ପ୍ରସାର ପାଇଁ ତାଙ୍କ ଲିଖିତ Learn Odia through Hindi ପୁସ୍ତକ ତାଙ୍କୁ ଦେଇଛି ଅସାମାନ୍ୟ ଖ୍ୟାତି ଓ ସ୍ୱୀକୃତି । ନିରଳସ ସାହିତ୍ୟ ସାଧନା ପାଇଁ ଗଙ୍ଗାଧର ରଥ ଫାଉଣ୍ଡେସନ ତରଫରୁ ୨୦୧୫ର ମର୍ଯ୍ୟାଦାଜନକ 'ସୁବ୍ରତ ରଥ ସ୍ମାରକୀ ପୁରସ୍କାର'ରେ ପୁରସ୍କୃତ ହୋଇଥିବା ରବିନାରାୟଣ ସମ୍ପ୍ରତି କଟକ ବେଢ଼କସାହିସ୍ଥିତ ଜଗନ୍ନାଥ କୀର ମହାବିଦ୍ୟାଳୟରେ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗରେ ଅଧ୍ୟାପନାରତ ।

କେବଳ ଓଡ଼ିଶା ନୁହେଁ, ସର୍ବଭାରତୀୟ ସାରସ୍ୱତ ପରିମଣ୍ଡଳରେ ଜଣେ ଚର୍ଚ୍ଚିତ ଚରିତ୍ର **ଶ୍ରୀ ଜଗନ୍ନାଥ ପ୍ରସାଦ ଦାସ** (ଜେପି)। କବିତା, ଗଳ୍ପ, ନାଟକ, ଉପନ୍ୟାସ, ଶିଶୁ ସାହିତ୍ୟ, ଗବେଷଣାତ୍ମକ ପୁସ୍ତକ, କଳା ଓ ସଂସ୍କୃତି ସମୀକ୍ଷା ଏହିପରି ସାରସ୍ୱତ ଜଗତର ପ୍ରତିଟି କ୍ଷେତ୍ରରେ ତାଙ୍କ ସୃଜନର ସ୍ୱାକ୍ଷର ସବୁବେଳେ ସ୍ୱୀକାର୍ଯ୍ୟ ଓ ପରିଚିତ। କେବଳ ଏତିକି ନୁହେଁ, ଚିତ୍ରଶିଳ୍ପୀ ଭାବେ ତଥା ଉଭୟ ମଞ୍ଚ ଓ ଚଳଚ୍ଚିତ୍ରରେ ଅଭିନୟ କରି ସେ ନିଜ କଳା-ଦକ୍ଷତାର ପରିଚୟ ଦେଇଛନ୍ତି। କବି ଭାବରେ ଜେପି ନିଜସ୍ୱ ଏକ ସ୍ୱତନ୍ତ୍ର ଶୈଳୀର ଉପସ୍ଥାପନ କରିଥିବାବେଳେ ଓଡ଼ିଆ ଗବେଷଣାତ୍ମକ ସାହିତ୍ୟକୁ ମଧ୍ୟ ଦେଇଛନ୍ତି ଅଭିନବ ଦିଶା ଓ ଦର୍ଶନ। ଓଡ଼ିଆ ଜାତିର ଏକ ନିର୍ଦ୍ଦିଷ୍ଟ କାଳଖଣ୍ଡର ଇତିହାସକୁ ଉପନ୍ୟାସ ଶୈଳୀରେ ରଚନା କରି ଜଣେ ବ୍ୟତିକ୍ରମୀ ଲେଖକ ଭାବେ ସର୍ବକାଳୀନ ପାଠକପ୍ରିୟ ହୋଇ ରହିବେ ସେ। ସର୍ବଦା ନିରଙ୍କୁଶ ଓ ସୃଜନମୁଖର ଜେପି ସବୁବେଳେ ଓଡ଼ିଆ ସାରସ୍ୱତ ଓ ସାଂସ୍କୃତିକ କ୍ଷେତ୍ରରେ ନୂଆ କିଛି କରିଛନ୍ତି ଓ ଏଥିରେ ସଫଳ ମଧ୍ୟ ହୋଇଛନ୍ତି। ଏହି ଦୃଷ୍ଟିରୁ ସେ ସବୁବେଳେ ସ୍ୱତନ୍ତ୍ର ଓ ସମାଦରଣୀୟ। ତାଙ୍କର ଅନେକ ସାରସ୍ୱତ କୃତୀ ଇଂରାଜୀ ସମେତ ବିଭିନ୍ନ ଭାରତୀୟ ଭାଷାରେ ଅନୂଦିତ ହୋଇ ଦେଶ ତଥା ବିଦେଶରେ ଖ୍ୟାତିଲାଭ କରିଛି। ଅନୁରୂପ ଭାବେ ଜେପି ଅନେକ ଭାରତୀୟ ରଚନାର ଇଂରାଜୀ ଅନୁବାଦ କରି ସେଗୁଡ଼ିକୁ ବିଶ୍ୱବିଦିତ କରିବାରେ ଉଲ୍ଲେଖନୀୟ ଅବଦାନ ରଖିଛନ୍ତି।

ଜେପିଙ୍କ ଜୀବନକୁ ଅନୁଧ୍ୟାନ କଲେ ଯେକେହି କହିପାରିବେ ଯେ ସେ ଜଣେ ଖ୍ୟାତନାମା ସାରସ୍ୱତ ବ୍ୟକ୍ତିତ୍ୱ ନୁହନ୍ତି, ଏକ ସ୍ୱୟଂସମ୍ପୂର୍ଣ୍ଣ ଅନୁଷ୍ଠାନ। ସାହିତ୍ୟ ଓ ସଂସ୍କୃତିର ଏଭଳି କୌଣସି ମଞ୍ଚ ନାହିଁ, ଯେଉଁଥିରେ ତାଙ୍କର ପଦପାତ ନାହିଁ ଓ ସେ ଏଥିରେ ସଫଳ ହୋଇନାହାନ୍ତି। ସବୁଠି ତାଙ୍କର ସୃଜନର ସଫଳ ସ୍ୱାକ୍ଷର। ଏହି ଦୃଷ୍ଟିରୁ ଜେପିଙ୍କ ଜୀବନ ବହୁବିଧ ବର୍ଣ୍ଣିଳ ଅଧ୍ୟାୟରେ ଗଢ଼ା। ଭାରତୀୟ ପ୍ରଶାସନିକ ସେବା ଭଳି ଗୁରୁତ୍ୱପୂର୍ଣ୍ଣ ପଦବୀ ତ୍ୟାଗ କରି ସାରସ୍ୱତ ଓ ସାଂସ୍କୃତିକ ଜଗତ ସହ ସଂପୃକ୍ତ ହେବା ଏବଂ ଏଭଳି ବହୁମୂଲ୍ୟ ଅବଦାନ ରଖିବା ଏକ ବିରଳ ଘଟଣା ନିଶ୍ଚିତ। ଓଡ଼ିଶା ସାହିତ୍ୟ ଏକାଡେମୀ, କେନ୍ଦ୍ର ସାହିତ୍ୟ ଅକାଦେମୀ, ସରସ୍ୱତୀ ସମ୍ମାନ ସମେତ ଦେଶ ବିଦେଶରୁ ଆହୁରି ଅନେକ ସ୍ୱୀକୃତି ଲାଭ କରିଥିବା ଜେପି ସବୁବେଳେ ଭିନ୍ନ ଓ ସ୍ୱତନ୍ତ୍ର।

ଜେପିଙ୍କ ଜୀବନ ଏକ ବହୁପ୍ରସ୍ତୀୟ ଜୀବନ, ଯାହାର ଦ୍ୟୁତି ଓ ଦର୍ଶନ ସବୁବେଳେ ତାଙ୍କ ପାଠକଙ୍କ ଲାଗି ଏକ ଦର୍ପଣ ହୋଇ ରହିଆସିଛି। ଏହି କ୍ରମରେ ଡକ୍ଟର ରବିନାରାୟଣ ମହାରଣାଙ୍କ **'ଜଣେ ଜେପି: ଅନେକ ଜୀବନ'**ର ପ୍ରକାଶନ ଆମ ଲାଗି ଏକ ସୁଖଦ ଅବସର।

- ମନୋଜ ତ୍ରିପାଠୀ



ପକ୍ଷୀଘର
ପ୍ରକାଶନୀ





**JANE JEPI: ANEKA JIBANA**
Biographical Sketch
by Dr. Rabinarayan Moharana
A Pakshighar Publication 2021